ପରାଶର ମନ୍ତ୍ରଜଳ ସ୍ପର୍ଶ କରାଇ ମତ୍ସ୍ୟଗନ୍ଧାର ମତ୍ସ୍ୟଗନ୍ଧ ଦୂରିଭୂତ କଲେ । ପୁନଶ୍ଚ ମନ୍ତ୍ରଜଳ ପାନ କରାଇ ମତ୍ସ୍ୟଗନ୍ଧାକୁ ନବଯୌବନ ପ୍ରଦାନ କଲେ । ସହସା ତା'ର ଶରୀରରୁ ଦିବ୍ୟ ସୌରଭ ବିଚ୍ଛୁରିତ ହୋଇ ଚତୁଃର୍ଦିଗକୁ ପ୍ରସାରିତ ହେଲା । ସୌରଭ ଯୋଜନ ପର୍ଯ୍ୟନ୍ତ ପରିବ୍ୟାପ୍ତ ହେବାରୁ ଋଷି ମତ୍ସ୍ୟଗନ୍ଧାକୁ ଯୋଜନଗନ୍ଧା ନାମ ପ୍ରଦାନ କଲେ । ଯୋଜନଗନ୍ଧା ରତିରସ ପୂରିତ ନବଯୌବନ ସ୍ପର୍ଶରେ ମୁଗ୍ଧା ହୋଇ ଜିତେନ୍ଦ୍ରିୟ ପରାଶରଙ୍କ ପ୍ରତି ଆକର୍ଷିତ ହେଲେ । ଲଜ୍ୟାବନତ ମୁଖରେ ସମ୍ମତି ପ୍ରଦାନ ପୂର୍ବକ ଦିବାଲୋକରେ ରତିକ୍ରୀଡ଼ାକୁ ବାରଣ କଲେ ।

ବିଶ୍ୱର ମଙ୍ଗଳ କାମନାରେ ବ୍ରତୀରହି ମହର୍ଷି ପରାଶର ଦିବାଲୋକରେ ଲୋକଲଜ୍ୟା ନିବାରଣ ନିମନ୍ତେ ଘନ କୁଝଟିକା ସୃଷ୍ଟି କଲେ । ତଦ୍‌ପରେ କୁଝଟିକା ବଳୟରେ ଅନିନ୍ଦ୍ୟ ସୁନ୍ଦରୀ ଯୋଜନଗନ୍ଧାଙ୍କ ସହିତ ଶୁଭ ଲଗ୍ନରେ ନୌକାରେ ରତିକ୍ରୀଡ଼ା ମହୋଲ୍ଲାସରେ ସମାପନ କଲେ । କ୍ରୀଡା ଶେଷରେ ପରାଶରଙ୍କ ବୀର୍ଯ୍ୟରୁ ଯୋଜନଗନ୍ଧାଙ୍କ କୋଳରେ ତାଙ୍କ ବାଞ୍ଛିତ ପୁତ୍ର ଶୁଭ ଲଗ୍ନରେ କୋଇଲି ନଦୀ ଦ୍ୱୀପରେ ଜନ୍ମ ହେଲେ । ଋଷି ନବଜାତ ପୁତ୍ରର ଜନ୍ମ ସଂସ୍କାର କର୍ମ ଯୋଜମାୟାଙ୍କ ଦ୍ୱାରା ଦ୍ୱୀପରେ ସମ୍ପନ୍ନ କରାଇ ପୁତ୍ରର ନାମ କୃଷ୍ଣ ଦ୍ୱୈପାୟନ ରଖିଲେ । ପ୍ରିୟାର ଉଜ୍ଜ୍ୱଳ ଭବିଷ୍ୟ ଚିନ୍ତାକରି ଯୋଜନଗନ୍ଧାଙ୍କୁ ପୁନଶ୍ଚ କୁମାରୀତ୍ୱ ପ୍ରଦାନ କଲେ । ଯୋଜନଗନ୍ଧା ଋଷି ପରାଶରଙ୍କ ଶୁଭାଶିଷ ଘେନି, ତାଙ୍କୁ ପୁତ୍ର ଦାୟିତ୍ୱ ସମର୍ପଣ କରି ପିତ୍ରାଳୟକୁ ଗମନ କଲେ ।

ଉପରୋକ୍ତ ଦାସରାଜା ଗଡ଼ରେ ରହି ଯୋଜନଗନ୍ଧା ଗୋପନରେ ଶିଶୁ ପୁତ୍ରର ଲାଳନ ପାଳନ କରୁଥାଆନ୍ତି । ପରେ କୃଷ୍ଣ ଦ୍ୱୈପାୟନ ପିତାମାତାଙ୍କ ଆଶିଷ ବହନ କରି ସ୍ୱୀୟ ସାଧନା ବଳରେ ବ୍ୟାସଦେବ ପଦବୀ ଲାଭକଲେ । ସେ ବେଦ ବିଭାଜନ, ଅଷ୍ଟାଦଶ ପୁରାଣ, ମହାଭାରତ ଇତ୍ୟାଦି ଅନେକ ଅମୂଲ୍ୟ ଗ୍ରନ୍ଥ ରଚନା କରି, ବିଶ୍ୱକୁ ଆଲୋକିତ କରି ଅମରତ୍ୱ ଲାଭ କରି ଅଛନ୍ତି ।

''ଦାସରାଜା ଗଡ଼''ର ଆଲୋଚ୍ୟ ଲେଖକ ''କୃଷ୍ଣ ଦ୍ୱୈପାୟନ - ବ୍ୟାସଦେବଙ୍କ ଜନ୍ମ'' ନାମକ ଏକ ଅପ୍ରକାଶିତ କବିତା (ରାଗ -ନଟବାଣୀ) ପ୍ରାୟତଃ ବିଗତ କୋଡ଼ିଏ ବର୍ଷ ତଳେ ରଚନା କରି, କବିତାର କେତେକ ପଙ୍‌କ୍ତି ତା'ର ପ୍ରକାଶିତ ନାଗରା ପୁସ୍ତକରେ ପ୍ରକାଶ କରିଅଛି । ଲେଖକ ପ୍ରଥମେ କବି । ତେଣୁ କବିତାର ମୋହ ଏଡ଼ି ନ ପାରି ସେ ତା'ର ପୂର୍ବ ରଚିତ ଅପ୍ରକାଶିତ ''କୃଷ୍ଣ ଦ୍ୱୈପାୟନ ବ୍ୟାସଦେବ ଜନ୍ମ'' କବିତାକୁ ପୁନଃ ପରିମାର୍ଜିତ କରି ନିମ୍ନରେ ଉଲ୍ଲେଖ ପୂର୍ବକ ଉତ୍କଳର ବେଦବ୍ୟାସ ଧାମ ଏବଂ ଦାସରାଜା ଗଡ଼ର ସ୍ମୃତିଚାରଣ କରିଅଛି ।

## କୃଷ୍ଣ ଦୈପାୟନ ବ୍ୟାସଦେବ ଜନ୍ମ

(ରାଗ - ନଟବାଣୀ; ନବାକ୍ଷରୀ ବୃତ୍ତ)

ଗଣାଦି ଘଟରେ ଦେବତା    ଅଗ୍ରେ ତୁମ୍ଭଙ୍କୁ କରି ଚିନ୍ତା ।୧।
ଚରଣେ କରେ ନମସ୍କାର    ସକଳ ବିଘ୍ନ କର ଦୂର ।।
ଆବରଣ ପଞ୍ଚ ଦେବତା    ପୟରେ ନତ କରି ମଥା ।।
ହୃଦୟେ ଚିନ୍ତେ ବେଦବ୍ୟାସ    ଗାଥାକୁ କରନ୍ତୁ ପ୍ରକାଶ ।।
ବ୍ୟାସଦେବଙ୍କ ଜନ୍ମ ଗୀତି    ପ୍ରକାଶେ ବଳାଇଛି ମତି ।।

କରୁଣା କର ଗଣନାଥ ପୂରଣ ହେଉ ମନୋରଥ ।।
ବେଦ ଜନନୀ ବାଗାମ୍ଭୃଣୀ ଅଭୟ ପ୍ରଦାନ ଜନନୀ ।।
ସୃଜନ ଜନଙ୍କ ପୟରେ ପ୍ରଣମି ଗାଥାକୁ ପ୍ରଚାରେ ।।
ଉତ୍କଳେ ବେଦବ୍ୟାସ ଧାମ ଅତି ପ୍ରାଚୀନ ପୁଣ୍ୟତମ ।।
ନନ୍ଦନ ବନ ଶୀରି ଧରି ଋଷି ମାନସ ଚୋରୀ କରି ।।
କ୍ଷେତ୍ରରେ ହୋଇଛି ବରଣୀ ବ୍ୟାସଗଣଙ୍କୁ କୋଳେ ଘେନି ।।
କରିଛି ଯେ ବେଦ ପ୍ରଚାର ଜଗତେ ନାହିଁ ପଟାନ୍ତର ।।
ନାଗରା ମହାବୀରେ ଜାତ ସେ ଆଦି କାଳୁଁ ଅବସ୍ଥିତ ।।
ଏହା ଜାଣନ୍ତି ବିଶ୍ୱମ୍ଭର ଅଥବା ଶମ୍ଭୁ ବେଦବର ।।
ଅନ୍ୟତ୍ର ଯେତେ ମୁନିଗଣ ଜାଣନ୍ତି ଧାମ ଯଶ ଗାନ ।।
କାଳ କବଳେ ଯଶ ଲୀନ ତାମସେ ହୋଇଛି ମଳିନ ।।
ରହିଛି ବେଦବ୍ୟାସ ଧାମ ଲୋକାଚାରରେ ଅଛି ନାମ ।।
ବ୍ୟାସାଶ୍ରମର ପୁଣ୍ୟ ଗୀତି ଆବର କବି କାବ୍ୟକୃତି ।।
ଉତ୍କଳ ଲିପିରେ ପ୍ରକାଶ କରି ଘୋଷନ୍ତି ଧାମ ଯଶ ।।
ଗଙ୍ଗା ଯମୁନା ବେନି ସଖି ନିଜର ନାମ ଗୋପ୍ୟ ରଖି ।।
ଶଙ୍ଖ କୋଇଲି ନାମ ବହି ପଶ୍ଚିମ ଉତ୍ତରରୁ ବହି ।।
ବେଦବ୍ୟାସରେ ହୋଇ ମେଳ ସରସ୍ୱତୀକୁ କରି କୋଳ ।୨୨।
ନିଜର ନାମ ହରାଇଲେ ସଙ୍ଗମେ ନବରୂପ ନେଲେ ।।
ଏଇ ସଙ୍ଗମେ ମହାନଦୀ ଗିରି କନ୍ଦର ବକ୍ଷ ଭେଦି ।।
ବ୍ୟାସକୁଣ୍ଡର ଜଳ ଛୁଇଁ ଗଙ୍ଗାଜଳର ପୁଣ୍ୟ ପାଇ ।।
ଦକ୍ଷିଣ ପୂର୍ବେ ଗତିକରି ସାଗର ମଣ୍ଡିଛି ସୁନ୍ଦରୀ ।।
ଏହାର ଅଛି ଯେଉଁ ନାମ ସର୍ବେ ପବିତ୍ର ମନୋରାମ ।।
ବ୍ରାହ୍ମୀ ନଦୀ ଯେ ପୁଣ୍ୟନଦୀ ଶିଷ୍ଟସୂ ନାମେ ଗଙ୍ଗାନଦୀ ।।
ବ୍ୟାସଙ୍କ ଜନ୍ମ ନଦୀ ହୋଇ ଶେଷରେ ବ୍ରାହ୍ମଣୀ ବୋଲାଇ ।।
ବେଦବ୍ୟାସର ପୁଣ୍ୟ ପାଦ ଧୋଇ ଲଭୁଛି ଦିବ୍ୟାନନ୍ଦ ।।
ଏ ପୁଣ୍ୟ ମିଳନ ସ୍ରୋତର ପଶ୍ଚିମ ଖଣ୍ଡି ପାହାଡ଼ର ।।
ନାମ ଅଟର ବେଦବ୍ୟାସ ତହିଁ ମୁନି ଏଁ ଯୋଗାଭ୍ୟାସ ।।
ଆଚରି ବେଦ ପ୍ରଚାରନ୍ତି ବ୍ରହ୍ମବେଦୀରେ ବସି ନିତି ।।
ପୂରୁବ ତଟ ପାହାଡ଼ର ଝରିଆ ନାମଟି ତାହାର ।।
ପ୍ରଚାର ହୁଏ ଜନମୁଖେ ବେନିର ଗାଥା ଶୁଣ ସୁଖେ ।।
ମହାବୀରର ଅଂଶ ହୋଇ ଦେବତା ମୁନି କୋଳେ ବହି ।।
ଗୁପତେ ଭକ୍ତଙ୍କୁ ଉଦ୍ଧାର କରୁ ଅଛନ୍ତି ନିରନ୍ତର ।।
ଝରିଆ ଗୁମ୍ଫାର ନିବାସୀ ପୁରାଣ ପରାଶର ଋଷି ।।

ପ୍ରତ୍ୟହ ନଦୀ ପାରହୋଇ ବ୍ରହ୍ମବେଦୀରେ ବେଦ ଗାଇ ।।
ଉପାସନାଦି କର୍ମମାନ କରି ଫେରନ୍ତି ପ୍ରତିଦିନ ।।
ବେଦବ୍ୟାସର ଐଶାନ୍ୟରେ କୋଇଲି ତଟ ପୂର୍ବଧାରେ ।।
ଚେଦି ରାଜନ ଦାସରାଜା ବେଦବ୍ୟାସଙ୍କୁ କରେ ପୂଜା ।।
ଏ ଦାସରାଜାର ଚରିତ ଶାସ୍ତ୍ରେ ଯା' ହୋଇଛି ବ୍ୟକତ ।।
ଶୁଣ ସୁମନେ ସୁଧୀଜନ ସଂକ୍ଷିପ୍ତେ ଶାସ୍ତ୍ରର କଥନ ।।
ଦେବରାଜଙ୍କ କୃପାଫଳେ ବଇଜୟନ୍ତୀ ମାଳା ଗଳେ ।।
ବହି ସ୍ଫଟିକମୟ ରଥେ ରାଜନ ଭ୍ରମେ ନଭପଥେ ।।
ଏଣୁ ଉପରିଚର ନାମ ଆବର ପୁଣ୍ୟ ବସୁ ନାମ ।।
ଦାସରାଜନ ନାମ ବହି ପାଳନ୍ତି ଚେଦି ପୁଣ୍ୟ ମହି ।।
ବସୁଙ୍କ ରେତ ଜଳେ ପାନ କରନ୍ତେ ମସ୍ୟ ହୃଷ୍ଟମନ ।।
ହୋଇ ଜନ୍ମାଏ କନ୍ୟାପୁତ୍ର ରାଜନ ନ ହୋଇଲେ ଜ୍ଞାତ
ବିରଚି ବିଚିତ୍ର ଚରିତ ଆଦ୍ରିକା ଶାପୁଁ ହେଲେ ମୁକ୍ତ ।୫୧।
ରାଜା ପୁତ୍ରର ମସ୍ୟନାମ ରଖି ଅର୍ଜିଲେ ପୁଣ୍ୟ କର୍ମ ।।
କନ୍ୟା କୈବର୍ତ୍ତ ଦାସଘରେ ବଢ଼ଇ କୁଳର ବେଭାରେ ।।
କୈବର୍ତ୍ତ କର୍ମେ ରଖି ଶ୍ରଦ୍ଧା ଶରୀର ଗନ୍ଧେ ମସ୍ୟଗନ୍ଧା ।।
ହୋଇ କୁମାରୀ ନିଏ ଦିନ ନ-ଗଣେ ଦୁଃଖ ସୁଖ ମାନ ।।
ନୌକା ଚାଳକ ଯେ ଧୀବର ଜରା ବ୍ୟାଧିରେ ସେ ଶିକାର ।।
ହେବାରୁ ନାବ ନ -ଚାଲିଲା ମସ୍ୟଗନ୍ଧାକୁ ଘାଟ ଦେଲା ।।
କୁଟୀରେ ରୋଗେ ପଡ଼ିଥାଏ ତା'କନ୍ୟା ନଉକା ଚଳାଏ ।।
ଏକାଳେ ପରାଶର ଋଷି ବ୍ରାହ୍ମଣୀ ତୀରରେ ପ୍ରବେଶି ।।
ପାରି ହେବାକୁ ଚିନ୍ତା କଲେ ନାବରେ କନ୍ୟାଏ ଦେଖିଲେ ।।
ଜାଣିଲେ ନାମ ମସଗନ୍ଧା ନୌକା ଚାଳନ ତାର ଧନ୍ଦା ।।
ଡ଼ାକି କହିଲେ ପରାଶର ଆମ୍ଭକୁ ନଦୀ ପାରିକର ।।
ହରଷେ ନମି ମୁନି ପଦେ କହଇ ବସ ନିରାପଦେ ।।
ନାବରେ ଋଷିଙ୍କୁ ବସାଇ ମନ୍ଥର ଗତିରେ ବାହଇ ।।
ତ୍ରିକାଳଜ୍ଞ ସେ ତପଚାରୀ ମାହେନ୍ଦ୍ର ଶୁଭ ଲଗ୍ନ ଧରି ।।
ମନେ ଚିନ୍ତିଲେ ଶକ୍ତିସୁତ ନିଜ ଔରଷୁଁ ପୁତ୍ର ଜାତ ।।
ଏକାଳେ ଲଭିଲେ ଜନମ ରଚିବ ବେଦ ପୁଣ୍ୟ କର୍ମ ।।
ଈଶ୍ୱର ପଦେ ଦୃଢ଼ ଭକ୍ତି ଧର୍ମ ରକ୍ଷଣେ ଧରି ଧୃତି ।।
ରଚିବ ବହୁ ଧର୍ମ ଗ୍ରନ୍ଥ ଜଗେତେ ଜନ୍ମାଇବ ସନ୍ତ ।।
ଘାପି ବିଷ୍ଣୁଙ୍କ ପଦ୍ମପାଦ ଜନଙ୍କୁ ଦେବ ମୁକ୍ତି ପଦ ।।
ଲଭିବ ବ୍ୟାସଦେବ ପଦ ରଖିବ ବଂଶର ସମ୍ପଦ ।।

ଏତେ ବିଚାରି ମୁନିବର
ପ୍ରଣମି ବିଷ୍ଣୁଙ୍କ ପୟର ।।
ଗାନ୍ଧର୍ବ ମିଳନ ଇଚ୍ଛିଲେ
ମଉନେ ଚୌଦିଗେ ଚାହିଁଲେ ।।
ସ୍ୱଭାବେ ଅଳପ ବୟସ
ଅଙ୍ଗେ ସୌନ୍ଦର୍ଯ୍ୟ ପରକାଶ ।।
କୁମାରୀ ନୁହେଁ ଯଉବନୀ
ଶୃଙ୍ଗାର ରସେ ନୁହେଁ ଧନୀ ।।
କିପରି ରଚିବେ ଶୃଙ୍ଗାର
କ୍ଷଣେ ବିଚାରି ମୁନିବର ।।
କମଳ କସ୍ତୁରୀ ଚନ୍ଦନ
କର୍ପୂର ସୌରଭ ସ୍ମରଣ ।।
କରି ମନ୍ତ୍ରିଲେ ଅର୍ଘ୍ୟଜଳ
ହୋଇଲା ସୁଗନ୍ଧ ଶୀତଳ ।।
ବାଳାକୁ ଦେଇ ମନ୍ତ୍ରଜଳ
ଭାଷିଲେ ପାନକର ଜଳ ।।
ସେ ଜଳ ପାନେ ମତ୍ସ୍ୟଗନ୍ଧ
ଯାଇ କାୟାରୁ ଦିବ୍ୟଗନ୍ଧ ।।
ବାହାରି ଯୋଜନେ ପ୍ରବେଶ
ହେବାରୁ ମହର୍ଷି ହରଷ ।।
ଦେଲେ ଯୋଜନଗନ୍ଧ ନାମ
ହରଣ କଲେ ବାଳା ତମ ।।୮୨।
ଯୋଜନଗନ୍ଧା ନାମ ବହି
ଯତିଙ୍କ ତେଜେ ତନୁ ଦାହି ।।
ସହସା ହୋଇଲେ ଯୌବନୀ
ସୌନ୍ଦର୍ଯ୍ୟେ ମଣ୍ଡାଇ ଅବନୀ ।।
ମୁଖ ନୟନ କୁଚ କର
ନିତମ୍ବ ଜଘନ ପୟର ।।
ଗଭୀର ନାଭି କଟି ଶୋଭା
ସର୍ବାଙ୍ଗ ବଢ଼ି ଦିବ୍ୟ ଆଭା ।।
ବିକାଶି ରତିରସେ ପୂରି
ଋଷି ମାନସ ଭାବଧରି ।।
କୁମାରୀ ହେଲେ ଯଉବନୀ
ଦେବ କାମିନୀ ରୂପ ଘେନି ।।
ରୂପ ବର୍ଣ୍ଣନା ପ୍ରୀତିଗାନ
ଶୁଣ ସୁମନେ ସାଧୁଜନ ।।
ତନୁଶ୍ରୀ ଚମ୍ପକ ବରଣୀ
ନୟନ ନୀଳୋତ୍ପଳ ଜିଣି ।।
ଭ୍ରୂଭଙ୍ଗୀ ସଫରୀ ସମାନ
ଚଳାଇ ବିନ୍ଧେ କାମବାଣ ।।
ନାସିକା ତିଳପୁଷ୍ପ ସମ
ମୁଖେ ଖଞ୍ଜିଛି ମନୋରମ ।।
ଜବାଅଧରେ ମଞ୍ଜୁବାଣୀ
ଫୁଟାଇ ନିଏ ଚିତ୍ତ କିଣି ।।
କୁନ୍ଦରଦନା ହାସେ ଖେଳି
ରସିକ ଚିତ୍ତେ ପ୍ରୀତିକଳୀ ।।
ବିକାଶି ବଢ଼ାଏ ଆନନ୍ଦ
ପ୍ରେମେ ଭେଟାଏ ପ୍ରେମାନନ୍ଦ ।।
ମୁଖପଦ୍ମରେ ଚନ୍ଦ୍ର ଶୋଭା
ଦେଖି ଚନ୍ଦ୍ରମା ତେଜି ପ୍ରଭା ।।
ଜଳଦ ମଧ୍ୟରେ ବିହରି
ଦେଖେ ସୁନ୍ଦରୀ ମୁଖଶୀରି ।।
କାଳିନ୍ଦୀ କୃଷ୍ଣ ମେଘମାଳ
କୁନ୍ତଳେ ଲୁଚି କରେ ଖେଳ ।।
ନୀଳ ଲହରୀ ମୃଦୁଳରେ
କୁନ୍ତଳ ଦେଖି ଗତିକରେ ।।
କମ୍ବୁ ସ୍ୱରୂପ କଣ୍ଠଶୋଭା
ମୁଖ ବକ୍ଷର ମଧ୍ୟେ ଉଭା ।।
ହୋଇ ଶିବଙ୍କ ଗୁଣଗାନ
କରି ବାଉଛି ମଧୁତାନ ।।
ବେନି କନକ ପୟୋଧର
ବକ୍ଷରେ ଉଠି କୁମ୍ଭାକାର ।।
ସ୍ୱର୍ଣ୍ଣ-ଧୂସର ରଙ୍ଗ ପରି
ଶିଖାଗ୍ରେ ଖଞ୍ଜିଛି ବଦରି ।।
ରସିକ ହୃଦେ ପ୍ରୀତି ରସ
ସଞ୍ଚାରି କରୁଛନ୍ତି ବଶ ।।

ସ୍ୱର୍ଣ୍ଣ-ଗଭୀର-ନାଭି-ବିଳ ଧରିଛି ପୁଣ୍ୟନଦୀ ଜଳ ॥
ହସ୍ତେ ଅଙ୍ଗୁଳି ମନୋହର ଚମ୍ପକ କଢ଼ିରୁ ସୁନ୍ଦର ॥
ଅଗ୍ରେ ପଳାସ ଦଳ ଧରି ଆହୁଲା ଚାଳି ନିଏ ତରୀ ॥
ସିଂହକଟିରେ ଝିନବାସ ଦୃଢ଼ ବନ୍ଧନେ କରି ବାସ ॥
ରତି ଭଣ୍ଡାର ଆବୋରିଛି ସୌନ୍ଦର୍ଯ୍ୟ ତେଜ ବଢ଼ାଉଛି ॥
ନିତମ୍ୱ-ରଥାଙ୍ଗ ସୁନ୍ଦର ଚଳନେ ଦେଖାଏ ହୃନ୍ଦର ॥
ଓଲଟ-ରମ୍ଭା ପଦ୍ମତେଜ ବହି ଜଘନ ପାଦ-ଅବ୍ଜ ॥
ଜଳେ ନିଜର ଅଙ୍ଗଶୋଭା ବିହରି ଧରେ ଜଳପ୍ରଭା ।୧୧୨।
ଚାତୁରୀ ଧୀବର ଦୁଲାଳୀ ହରଷେ ନିଜ ନାବ ଚାଳି ॥
ଯତିଙ୍କ ମୁଖ ଜ୍ୟୋତି ଦେଖି ଅନ୍ତରେ ପୂଜି ହୁଏ ସୁଖୀ ॥
ଏକାଳେ କନ୍ଦର୍ପ ବିଚାର ତାପସ ତପ କରି ଦୂର ॥
ସୁରତି-ରସେ ରସାଇବି ମୋ ଯଶ ତ୍ରିପୁରେ ରଖିବି ॥
ଏତେ ବିଚାରି ପଞ୍ଚଶର ମୁନିଙ୍କୁ କରିଲେ ପ୍ରହାର ॥
ମନ୍ମଥ ଜ୍ୱାଳା ଗୁରୁ ହେଲା ଯତିଙ୍କ ଶରୀର କମ୍ପିଲା ॥
ବ୍ରହ୍ମରେ ନ ରହିଲା ଲୟ ଶୃଙ୍ଗାର ଚେତନା ଉଦୟ ॥
ହେବାରୁ ଚିନ୍ତେ ପରାଶର ଚିନ୍ତିଲେ ରମଣ ବେଭାର ॥
ସହଜେ ଏତ ନଦୀ ଘାଟ ନାବ ଭିତରେ କେଳିନାଟ ॥
ରଚିବା ନୁହଁଇ ବିଧାନ ଶାସ୍ତ୍ରରେ ହୋଇଛି ବଖାଣ ॥
ଦିବାରେ ଦିବାକର ଜାତ ସଂସାରେ ସରବେ ସଚେତ ॥
ବିଳମ୍ୱେ ହେବ ଲକ୍ଷ୍ୟ ଭ୍ରଷ୍ଟ ଜଗତେ ଜନମିବେ ଦୁଷ୍ଟ ॥
ବିଶ୍ୱର ମଙ୍ଗଳ କାମନା ଚିନ୍ତିଲେ ହୋଇ ହୃଷ୍ଟମନା ॥
ମନ୍ତ୍ରେ ଚୌଦିଗ ଧୂମ୍ରମୟ ତହିଁଲେ ସୃଜିଲେ ବଳୟ ॥
ଲହରୀ ଫେନମାଳ ପ୍ରାୟେ ବଳୟ ପ୍ରସାରିତ ହୁଏ ॥
କୁହୁଡ଼ି ନାମ ଦେଇ ତାର କହିଲେ ଯଶସ୍ୱୀ ଧୀବର ॥
ରମିବା ଅର୍ଥେ ଦଶଦିଗ ଆଚ୍ଛାଦି ରଖ ମହାଭାଗ ॥
ଶିଶିର ହୋଇଲା ବିସ୍ତାର ଦିବସେ ଘୋଟିଲା ଅନ୍ଧାର ॥
ରଚିଲେ ମାୟା କେଳିଗୃହ ରମଣ ଅର୍ଥେ ମହାଶୟ ॥
ଶିଶିର ଝରି ଝରି ଧୀରେ ଯୋଜନଗନ୍ଧା ହୃଦ ଥରେ ॥
ସରାଗେ କୁମାରୀକୁ ଚାହିଁ ଷୋଡ଼ଶୀ କାନ୍ତି ତାରେ ଦେଇ ॥
କହିଲେ ଶୁଣ ପ୍ରିୟ ସଖି ପ୍ରୀତି ପ୍ରଦାନେ କର ସୁଖୀ ॥
ଅଧୋବଦନେ ଲଜ୍ୟାବତୀ ମହର୍ଷି ପୟରେ ପ୍ରଣତି ॥
କରି କହିଲେ ଶୁଣ ଦେବ ଅଚିରେ ଦେଲ ଯେ ବିଭବ ॥
ବିଭବେ ତବ ଅଧିକାର ଅର୍ପିଲି ଚରଣେ ତୁମ୍ଭର ॥

ଏମନ୍ତେ ନେତ୍ର-ଶର ମାରି    ସମ୍ମତି ଦେଲା ସେ ସୁନ୍ଦରୀ ।।
ଅପରକ୍ଷଣେ ପିତା ସ୍ମରି    ଭବିଷ୍ୟ ଚିନ୍ତା ହୃଦେ ଭରି ।।
ମଉନେ ହୋଇଲେ ବିଷାଦ    ଚାହିଁ ମୁନିଙ୍କ ପଦ୍ମପାଦ ।।
ମାନସୀ ହୃଦ ଭାବଜାଣି    ଶୁଣାଇ ଭବିଷ୍ୟତ ବାଣୀ ।।
ପ୍ରିୟାକୁ ଧରି ପରାଶର    କହିଲେ ପ୍ରୀତି ଦାନକର ।୧୪୨।
ତୋହର ରତିରସ ହରି    ସନ୍ତୋଷେ ଚିତ୍ତ ଯାଉ ପୂରି ।।
ଶିଶିର ବାତ ଆପେ ଯିବ    ପୂର୍ବ ଶରୀର ପ୍ରାପ୍ତ ହେବ ।।
ସାର୍ଥକ ହେଉ ତୋ ଜୀବନ    କହି ତୋଷିଲେ ତା'ର ମନ ।।
ନାବ ଲଂଗାଇ କୁଦ ତଳେ    ପ୍ରିୟାକୁ ଘେନି ନିଜ କୋଳେ ।।
କୋଇଲି ନାବ ଶଯ୍ୟାପରେ    ଶୃଙ୍ଗାରେ ମଜ୍ଜି ହରଷରେ ।।
ବ୍ରହ୍ମ ଶକତି କଲେ ଦାନ    ସମ୍ଭୋଗେ କ୍ରୀଡ଼ା କଲେ ପୂର୍ଣ୍ଣ ।।
ଧବଳ କାଶତଣ୍ଡୀ ମେଳେ    ଦ୍ୱୀପେ ବିହରି ପ୍ରୀତି ଭୋଳେ ।।
ପ୍ରିୟାର ଗର୍ଭର ଲକ୍ଷଣ    ମନ୍ତ୍ରେ ହରିଲେ ତତ୍‌କ୍ଷଣ ।।
ଯୋଜନଗନ୍ଧା ଗର୍ଭ ଚାହିଁ    ଚିତ୍ତେ ଚିନ୍ତିଲେ ଭାବଗ୍ରାହୀ ।।
ଏକାଳେ ବିଷ୍ଣୁ ତେଜ ବହି    ଗର୍ଭୁଁ ଜନମି ଭାବଗ୍ରାହୀ ।।
ତେଜେ ଶିଶିର ଦୂରକଲେ    ଜନନୀ କୋଳେ ବିଜେ ହେଲେ ।।
ଚୌଦିଗ ଚହଟି ଉଠିଲା    ସଧୀରେ ମଳୟ ବହିଲା ।।
ପୁଷ୍ପ ବରଷି ଦେବଗଣ    ଶିଶୁର ବାଞ୍ଛିଂଲେ କଲ୍ୟାଣ ।।
ବାଳ-ଅରୁଣ-କୃଷ୍ଣ ବର୍ଣ୍ଣ    ଦ୍ୱୀପରେ ସ୍ଥାପିଲେ ଚରଣ ।।
ଜନମି ବେଦ ଉଚ୍ଚାରିଲେ    ପିତା ମାତାଙ୍କୁ ତୋଷକଲେ ।।
ପୁତ୍ରକୁ କୃଷ୍ଣ ଦ୍ୱୈପାୟନ    ବ୍ୟାସଦେବ ନାମ ଦେଇଣ
ଯୋଗମାୟାଙ୍କ କୃପାଫଳେ    ଜାତ ସଂସ୍କାର କର୍ମକଲେ ।।
ସତ୍ୟକୁ ପାଳି ସତ୍ୟବତୀ    ପୁତ୍ରକୁ ଲଭି ଭାଗ୍ୟବତୀ ।।
ବେନି ନାମ ପ୍ରିୟାକୁ ଦେଇ    ସନ୍ତୋଷେ ତାର ମୁଖ ଚାହିଁ ।।
ପୁତ୍ରକୁ ଧରି ପରାଶର    କୁହୁଡ଼ି କରାଇଲେ ଦୂର ।।
ଯଉବନୀକୁ କୁମାରୀତ୍ୱ    ପ୍ରଦାନ କଲେ ତପୋବନ୍ତ ।।
ପ୍ରିୟାର ପୂର୍ବ ଭାବସ୍ମରି    କହିଲେ ଶୁଣ ଗୋ ସୁନ୍ଦରୀ ।।
ତୋ ପିତା ରୋଗ ଦୂର ହେଉ    ତୋ ଯଶ ଚିରକାଳ ରହୁ ।।
ଭରତବଂଶୀ ପାଟରାଣୀ    ହୋଇ ଘୋଷିବୁ ମୋର ବାଣୀ ।।
ଅକ୍ଷୟ ଏ ଆମ୍ଭ ବଚନ    କଦାପି ନୋହିବ ଖଣ୍ଡନ ।।
ଏତେକ ଆଶିଷ ପ୍ରଦାନୀ    ଗୁମ୍ଫାକୁ ଗଲେ ମହାମୁନି ।।
ବିଦାୟ ନେଇ ଗଲେ ସତୀ    ଧନ୍ୟ ସେ ଧୀବରର ପୁତ୍ରୀ ।୧୬୯।

ଦାସରାଜାଙ୍କ ଗଡ଼େ ଥାଇ          ପୁତ୍ରକୁ ଗୋପନେ ପାଳଇ ।୧୭୦।
ସେଦିନୁଁ ପ୍ରତ୍ୟହ ସେଠାରେ          ଶିଶିର ଲୀଳା ଖେଳାକରେ ।।
ବେଦ ପ୍ରଚାରି ଦ୍ୱୈପାୟନ          ଲଭିଲେ ବ୍ୟାସଦେବ ନାମ ।।
ଦେଖାଇ ମୁକ୍ତିପଥ ଦ୍ୱାର          ସଦା ଅମର ସନ୍ଥ ଧୀର ।।
କରନ୍ତି ଜଗତ ମଙ୍ଗଳ          ଗୁପତେ ଭ୍ରମି ଭୂମଣ୍ଡଳ ।।
ଋଷି ଅପର ନାମ ଗାନ          କରେ ପାରାଶର୍ଯ୍ୟ କାନୀନ ।।
ବାଦରାୟଣ ସତ୍ୟବ୍ରତ          ସତ୍ୟଭାରତ ସତ୍ୟରତ ।।
ନାମାନୁସାରେ ଦିବ୍ୟ କର୍ମ          କରି ସ୍ଥାପିଲେ ଶାସ୍ତ୍ରଧର୍ମ ।।
ତାଙ୍କ ଆଶିଷେ ଜନ୍ମ ଗୀତ          ଗୋକୁଳ ବିହିଲେ ସମାପ୍ତ ।।
ରଚନା ଦୋଷ କ୍ଷମାକର          ଭାବକୁ ଘେନ ଋଷିବର ।।
ତବ ଆଶିଷେ ମାତାପଦ          ସେବାରେ ଭୁଲେ ଅବସାଦ ।।
ଏଣୁ ସୁଜନଙ୍କ ପୟରେ          ପ୍ରଣମି କ୍ଷୁଦ୍ର ଅଳି କରେ ।।
ଦାସରାଜାଙ୍କ ଗଡ଼ ସ୍ଥାନ          ଯା' ଥିଲା ଅରଣ୍ୟରେ ପୂର୍ଣ୍ଣ ।।
ଏବେ ସେ ସ୍ଥାନେ ଖଳ ଲୋକ          ଅଛନ୍ତି ହୋଇ ବଡ଼ଲୋକ ।।
କୋଠା ନିର୍ମାଣି ତହିଁପରେ          ଅଛନ୍ତି ଭୋଗ ବିଳାସରେ ।।
କବି ଦୃଷ୍ଟିରେ ସମ୍ମୁଖରେ          ଗଡ଼ର ମୁଖ୍ୟପୀଠ ପରେ ।।
ଗୋଶାଳା ଗଢ଼ି ସେଠ ଲୋକ          ସମାଜେ ସାଜି ଧର୍ମବକ ।।
ଶାସକ ଚିତ୍ତ ତୋଷୁଛନ୍ତି          ଜନଙ୍କୁ ନାହିଁ ଯାଙ୍କ ଭ୍ରାନ୍ତି ।।
ଜନ ଆପତ୍ତି ସରକାର          ନ-ଶୁଣି କରେ ଅବିଚାର ।।
ଉଠ ସକଳ ସୁପ୍ତଭାଇ          ଧର୍ମ ରକ୍ଷଣେ ଧ୍ୟାନ ଦେଇ ।।
ପ୍ରଭୁଙ୍କୁ କରିବା ଗୁହାରି          ଧର୍ମ ରଖିବେ ଚକ୍ରଧାରୀ ।।
ବ୍ୟାସଧାମର ପୁଣ୍ୟଯଶ          ବିସ୍ତାରି ଜନନୀ ଆଶିଷ ।।
ଲଭି ସମାଜ ଅବସାଦ          ହରି ବିତର ଦିବ୍ୟାନନ୍ଦ ।।
ଜନନୀ ହୋଇବେ ହରଷ          ସର୍ବ କଳ୍ମଷ ଯିବ ନାଶ ।।
ଜନମ ହୋଇବ ସଫଳ          ଲଭିବା ପ୍ରଭୁ ଆଦିମୂଳ ।୧୯୪।

# ବିବର୍ତ୍ତନର ଶରବ୍ୟ ଦାସରାଜା ଗଡ଼

ସମୟ ଚକ୍ରରେ କଥିତ ଦାରସାଜାଗଡ଼ ସହିତ ଦ୍ୱାପର ଯୁଗର ଅବସାନ ଘଟିଛି । ବର୍ତ୍ତମାନ ଘୋର କଳିକାଳର ରାଜତ୍ୱ ଚାଲିଅଛି । ସତ୍ୟ, ଶାନ୍ତି, ଦୟା, କ୍ଷମା, ଧର୍ମ ଏବଂ ନ୍ୟାୟ ଆଦି ଦେବଗୁଣଗୁଡ଼ିକ ଅନ୍ୟାୟର ଛତ୍ର ଛାୟାତଳେ ଦଳିତ ନିସ୍ପେଷିତ ହୋଇ ନିଃଶେଷ ହେବାକୁ ବସିଛି । ରକ୍ଷକ ଭକ୍ଷକ ସାଜି ଦାନବ ହେବାରେ କୁଣ୍ଠାବୋଧ କରୁନାହିଁ । ସମ୍ଭବତଃ କଳିଖେଳ କୂଟନୀତିର ଅବସାନ ସମୟ ନିକଟତର ହେଉଅଛି । ଆଜିର ଆଧାତ୍ମିକ ଶକ୍ତି ବିହୀନ ଅତ୍ୟାଧୁନିକ ବିଜ୍ଞାନର ଚରମ ବିକାଶରେ ଅତୀତର ବୈଦିକ ବିଜ୍ଞାନ ଘଟଣା ପ୍ରବାହ ସମାଜ ଦୃଷ୍ଟିରେ କପୋଳକଳ୍ପିତ ଭଳି ରୂପ ନେଉଛି । ଆଧାତ୍ମିକ ଚିନ୍ତା ଚେତନାରୁ ପୃଥିବୀର ଶାସକ ଗୋଷ୍ଠୀ ଯେତିକି ଦୂରେଇ ଯାଉଅଛନ୍ତି; ଧରିତ୍ରୀରେ ସେତିକି ଅନ୍ୟାୟ ଅନୀତି ରୂପୀ ବେଦନାଦାୟକ ଘଟଣା ପ୍ରବାହ ବଢ଼ି ଚାଲିଅଛି । ଏହି ଭଳି ସମୟରେ ଉତ୍କଳର ବେଦବ୍ୟାସ ଧାମରେ ବେଦ ବିଭାଜକ ଅଷ୍ଟାଦଶ ପୁରାଣ, ମହାଭାରତ ରଚୟିତା ମହର୍ଷି କୃଷ୍ଣଦ୍ୱୈପାୟନ ବ୍ୟାସଦେବଙ୍କ ଜନ୍ମ ସମ୍ପର୍କିତ ଦାସରାଜାଗଡ଼ ସ୍ମୃତିପୀଠ କେତେକ ଅବାଞ୍ଛିତ ବ୍ୟକ୍ତି ବିଶେଷଙ୍କ ବାସଗୃହରେ ପରିଣତ ହୋଇଯିବା ଅସ୍ୱାଭାବିକ ନୁହେଁ ।

ଅଠେଇଶ (୨୮)ତମ ବ୍ୟାସଦେବ ମହର୍ଷି କୃଷ୍ଣ-ଦ୍ୱୈପାୟନ ବ୍ୟାସ ଉତ୍କଳର ବେଦବ୍ୟାସ ଧାମ ସମ୍ମୁଖସ୍ଥ ବ୍ରାହ୍ମଣୀ ସଙ୍ଗମ ଜଳରେ ବିଲୀନ ଯମୁନା ନଦୀ ଦ୍ୱୀପରେ (କୋଇଲି ନଦୀ ପଠାରେ) ଜନ୍ମ ହୋଇଥିଲେ। ଉକ୍ତ ଦ୍ୱୀପର ମୂକସାଖୀ ରୂପେ ବ୍ରାହ୍ମଣୀ ସଙ୍ଗମର ମଧଭାଗରେ ବେଦବ୍ୟାସ ପାହାଡ ସମ୍ମୁଖରେ, ଏକ ପଥର ଭେଡ଼ା ଜରାଜୀର୍ଣ୍ଣ ଅବସ୍ଥାରେ ଦଣ୍ଡାୟମାନ ହୋଇଅଛି । ଅପର ମୁଖ୍ୟସାକ୍ଷୀ ପୂର୍ବୋକ୍ତ ଦାସରାଜଗଡ଼, ଋଷି କୃଷ୍ଣ-ଦ୍ୱୈପାୟନ ବ୍ୟାସଦେବଙ୍କ ଜନ୍ମ ସମୟରୁ ପ୍ରାୟତଃ ବିଗତ ୧୯୫୫ ମସିହା ପର୍ଯ୍ୟନ୍ତ ଜନଶୂନ୍ୟ ଅବସ୍ଥାରେ ପ୍ରକୃତିର ଅପରୂପ ସୌନ୍ଦର୍ଯ୍ୟ ବହନ କରି କୋଇଲି ନଦୀ ପୂର୍ବଦିଗ ତଟସ୍ଥ, ଛେଣ୍ଡଗ୍ରାମ ଉତ୍ତରଦିଗ ମୁଣ୍ଡରେ ବିଦ୍ୟମାନ ଥିଲା । ପ୍ରାଚୀନ ଗାଙ୍ଗପୁର ରାଜ୍ୟର ପ୍ରଜାନୁରଞ୍ଜକ ରାଜା ସ୍ୱର୍ଗତ ରଘୁନାଥ ଶେଖର ଦେଓ ଏବଂ ନାଗରା ଜମିଦାର ବାଲିଙ୍ଗ ସିଂ ମହାପାତ୍ରଙ୍କ ରାଜତ୍ୱ ସମୟରେ ବେଦବ୍ୟାସ ଧାମ ଓ ତତ୍‌ସଲଗ୍ନ ସକଳ ପୌରାଣିକ, ପୀଠଗୁଡ଼ିକୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରାଯାଇ ଏଗୁଡ଼ିକର ଆଧାତ୍ମିକ ବିକାଶର ପ୍ରଚାର ପ୍ରସାର କାର୍ଯ୍ୟ ଆରମ୍ଭ ହୋଇ ଆସିଥିବା ବିଷୟ ଜନଶ୍ରୁତି ଘୋଷଣା କରି ଆସିଅଛି । ଏମାନଙ୍କର ପରବର୍ତ୍ତୀ ବଂଶଧରମାନେ ପୂର୍ବପୁରୁଷଙ୍କ ପ୍ରବର୍ତ୍ତିତ ବିଧିବିଧାନ ଗୁଡ଼ିକୁ ସମ୍ମାନିତ କରି ଆସୁଥିଲେ । ଉକ୍ତ ସମୟରୁ ବହୁକାଳ ପର୍ଯ୍ୟନ୍ତ ଦାସରାଜାଗଡ଼ ଗାଙ୍ଗପୁର-ନାଗରାର ମୁଖ୍ୟ ଭୂୟାଁ ପୀଢ଼ ରୂପେ ବ୍ୟବହୃତ ହୋଇଥିବା ଗାଥା ଜନଶ୍ରୁତି କହେ । ନାଗରା ଲେଖକ ବେଦବ୍ୟାସ ଧାମ ଋଷି କୃଷ୍ଣ ଦ୍ୱୈପାୟନ ବ୍ୟାସଦେବଙ୍କ ଜନ୍ମ ଓ ଦାସରାଜାଗଡ଼ ସମ୍ପର୍କରେ କେତେକ ଆଲୋଚନା ତାଙ୍କର ପୂର୍ବ ପ୍ରକାଶିତ ''ସିଂହାବଲୋକ'' (୧୯୮୫ ମସିହା) ଏବଂ ନାଗରା ରାଜ୍ୟ ଉପରେ ଆଧାରିତ ''ନାଗରା'' (୧୯୯୨ ମସିହା)ପୁସ୍ତକ ଦ୍ୱୟରେ ପ୍ରକାଶିତ କରିଅଛନ୍ତି । ତେଣୁ ଧାମ ସମ୍ପର୍କରେ ଅଧିକ ଆଲୋଚନା ନ କରି ଅଧୁନା ଦାସରାଜାଗଡ଼ର ଅସ୍ତିତ୍ୱ ଉପରେ ଆଲୋକପାତ କରିବା ଅପ୍ରାସଙ୍ଗିକ ହେବ ନାହିଁ ।

ଓଡ଼ିଶାର ସୁନ୍ଦରଗଡ଼ ଜିଲ୍ଲାସ୍ଥ ବେଦବ୍ୟାସ ଧାମ ପୂର୍ବଦିଗରେ ବ୍ରାହ୍ମଣୀ ନଦୀ ଖଣ୍ଡି ଉପରେ ଛେଣ୍ଡ ଗ୍ରାମ ଅବସ୍ଥିତ । ଛେଣ୍ଡଗ୍ରାମ ଭୂୟାଁ ପଡ଼ା ଉତ୍ତରଦିଗ ମୁଣ୍ଡରେ ଦାସରାଜାଗଡ଼ ସ୍ତୁପ ଆକାରରେ ବିଦ୍ୟମାନ ଥିଲା । ଉକ୍ତ ଗଡ଼ର ରକ୍ଷଣା ବେକ୍ଷଣ ଦାୟିତ୍ୱ ଛେଣ୍ଡଗ୍ରାମର ଭୂୟାଁ ଗଞ୍ଜୁ ସ୍ୱର୍ଗତ ଚରଣ ସା ଏବଂ ତାଙ୍କର ପିତୃ-ପିତାମହମାନଙ୍କ ଉପରେ ନ୍ୟସ୍ତ ଥିଲା । ଚରଣ ସା ଙ୍କ ଅମଳରେ ଦାସରାଜାଗଡ଼ର ଗଡ଼ଶିରୀ (ଗଡ଼ଦେବୀ)ଙ୍କ ଜମି ଉପରେ ୪ ମୁଲା ଖାଁ ନାମକ ଜନୈକ ବ୍ୟକ୍ତି ତାଙ୍କର ଜ୍ଞାତସାରରେ ସେଠାରେ ସପରିବାର ବାସକଲା । ଦୈବ ବଶତଃ ମୁଲା ଖାଁ ଗଡ଼ଶିରୀଙ୍କ ପ୍ରକୋପର ଶିକାର ହୋଇ ବହୁ ଦୈବୀ ଅସୁବିଧା ଭୋଗୀ, ଦାସରାଜଗଡ଼ ପରିତ୍ୟାଗ କରି ଅନ୍ୟତ୍ର ବାସକଲା । ଉକ୍ତ ଘଟଣା ପରେ ବାଲେଶ୍ୱର ଜିଲ୍ଲାର ଭଦ୍ରଖ ନିବାସୀ ଶ୍ରୀ ବୈଲୋଚନ ମହାପାତ୍ର ନାମକ ଜନୈକ ଶିକ୍ଷକ ସ୍ୱର୍ଗତ ଶିବ ଚରଣ ସା ଛେଣ୍ଡର ଗୁଞ୍ଜାଙ୍କ ଠାରୁ ଦାସରାଜାଗଡ଼ର ଗଡ଼ଶିରୀସ୍ଥଳରୁ ଅଠର ଅବା ପଚାଶ ଡ଼ିସିମିଲ ଜମି କିଣି ତହିଁରେ ପକାଗୃହ ନିର୍ମାଣ କରି ସପରିବାର ବାସକଲେ । ଉକ୍ତ ଗୃହରେ ବାସ କରିବା ପରଠାରୁ ବୈଲୋଚନ ମହାପାତ୍ରଙ୍କ ସ୍ତ୍ରୀ ଧୀରେ ଧୀରେ ପାଗଳୀ ହୋଇ ଶେଷକୁ ଅଣାୟତ୍ତ ଅବସ୍ଥାରେ ପହଞ୍ଚିଲେ। ଛେଣ୍ଡଗ୍ରାମ ବାସିନ୍ଦାଙ୍କ ପରାମର୍ଶ ଗ୍ରହଣ କରି ବୈଲୋଚନ ମହାପାତ୍ର ଦାସରାଜା ଗଡ଼ ସ୍ଥିତ ତାଙ୍କର ବାସଗୃହ ଏବଂ ଡ଼ିହକୁ ରାଉରକେଲାର ଜନୈକ ମାରୁଆଡ଼ୀ ଗୃହସ୍ଥୀ ଉଦ୍ୟୋଗକୁ ବିକ୍ରୀକରି ଅଧୁନା ବାସନ୍ତୀ କଲୋନୀରେ ରହିଥିବା ଘଟଣା ଜନଶ୍ରୁତିରୁ ଶୁଣିବାକୁ ମିଳେ ।

ରାଉରକେଲାର ଗୃହସ୍ଥୀ ଉଦ୍ୟୋଗ ପରିଚାଳକ ଉପରୋକ୍ତ ଦାସରାଜାଗଡ଼ର ଗଡ଼ ଶୀରି ଉପରେ କ୍ରୟ କରିଥିବା ଘରଡ଼ିହକୁ ବର୍ଦ୍ଧିତ କରି ତହିଁରେ ନୂତନ ସୌଧ ଏବଂ ପୁଷ୍ପ ଉଦ୍ୟାନ ନିର୍ମାଣ କରି ରହିଛନ୍ତି । ଏତଦ୍ ବ୍ୟତୀତ ତିନି ଜଣରୁ ତତୋଧିକ ଛେଣ୍ଡଗ୍ରାମ ବାହାରର ବ୍ୟକ୍ତି ବିଶେଷ ଦାସରାଜାଗଡ଼ ମୁଖ୍ୟପୀଠର କେତେକାଂଶରେ ବାସଗୃହ ନିର୍ମାଣ କରି ବାସ କରିଅଛନ୍ତି ।

ସନ୍ ୧୯୯୧ ମସିହା ନଭେମ୍ବର ମାସରେ ଆଲୋଚ୍ୟ ଲେଖକ ଗୃହସ୍ଥୀ ଉଦ୍ୟୋଗ ପରିଚାଳକ ବର୍ଗଙ୍କୁ ଦାସରାଜାଗଡ଼ର ଐତିହ୍ୟ ସମ୍ପର୍କରେ ଅଭିହିତ କରାଇ, ଦାସରାଜାଗଡ଼ର ବେଦଖଲ ମୁଖ୍ୟପୀଠରେ ଦାସରାଜାଙ୍କ ସ୍ମୃତିସ୍ତମ୍ଭ ଅଥବା ମହର୍ଷି କୃଷ୍ଣ ଦ୍ୱୈପାୟନ ବ୍ୟାସଦେବଙ୍କ ଏକ ପ୍ରତିମୂର୍ତ୍ତି ସ୍ଥାପନ କରିବା ପ୍ରସଙ୍ଗ ଉପରେ ଗୃହସ୍ଥୀ ଉଦ୍ୟୋଗର ସାହାଯ୍ୟ ସହଯୋଗ କାମନା କରିଥିଲା । ଗୃହସ୍ଥୀ ଉଦ୍ୟୋଗର ତତ୍କାଳୀନ ଜନୈକ କର୍ତ୍ତୃପକ୍ଷ ଲେଖକଙ୍କୁ ଯଥାଶକ୍ତି ସାହାଯ୍ୟ ଦେବାକୁ ମୌଖିକ ପ୍ରତିଶ୍ରୁତି ଦେଇଥିଲେ । ସନ୍ ୧୯୯୨ ମସିହା ଜାନୁଆରୀ ମାସରେ ଗୃହସ୍ଥୀ ଉଦ୍ୟୋଗ ନାଗରା ଲେଖକଙ୍କୁ ଦେଇଥିବା ପ୍ରତିଶ୍ରୁତି ଭଙ୍ଗକରି ଦାସରାଜାଗଡ଼ର ମୁଖ୍ୟପୀଠ ଉପରେ, ଉଦ୍ୟୋଗର ପରିକଳ୍ପିତ ଗୋଶାଳା ଯୋଜନା ନିର୍ମାଣ କାର୍ଯ୍ୟ ଆରମ୍ଭ କଲେ ।

ମହର୍ଷି କୃଷ୍ଣ-ଦ୍ୱୈପାୟନ ବ୍ୟାସଦେବଙ୍କ ଜନ୍ମସ୍ମୃତିର ମୂକସାକ୍ଷୀ ଦାସରାଜାଗଡ଼-ମୁଖ୍ୟପୀଠର ବିଲୁପ୍ତ ଘଟଣା ପ୍ରବାହକୁ ଅନୁସନ୍ଧାନ କରି ଲେଖକ ନିଜର ଅଭିସନ୍ଧିସୁ ଭାବଧାରାକୁ ନିମ୍ନରେ ପ୍ରଦତ୍ତ କରିଅଛି ।

କଥିତ ଗୃହସ୍ଥୀ ଉଦ୍ୟୋଗ ପରିଚାଳକ ସ୍ୱର୍ଗତ ଚରଣ ସାଙ୍କ ଦୁଇ ପୁତ୍ର ଶ୍ରୀ ଜନ୍ମେଜୟ ସା ଓ ଶ୍ରୀ ଜଗତ ସା ଉଭୟଙ୍କ ସରଳ ଉଦାସିଆ ଭୋଳା ପ୍ରକୃତିକୁ ଉତ୍ସାହିତ କରି, ସେମାନଙ୍କ ଠାରୁ ଦାସରାଜାଗଡ଼ର ଅବଶିଷ୍ଟ ମୁଖ୍ୟପୀଠକୁ ସନ୍ ୧୯୯୧ ମସିହାରେ କିଣିନେବା ଗାଥା ଜନଶ୍ରୁତି କହେ ।

ସନ୍ ୧୯୯୨ ମସିହାଠାରୁ ଇତି ମଧ୍ୟରେ ଦାସରାଜାଗଡ଼ର ମୁଖ୍ୟପୀଠ ଉପରେ ଗୃହସ୍ଥୀ ଉଦ୍ୟୋଗ ନିଜର ଗୋଶାଳା ନିର୍ମାଣ କରି ଉଦ୍ୟୋଗର ଉଜ୍ଜ୍ୱଳ ଭବିତବ୍ୟ ସ୍ୱପ୍ନରେ ଗୌରବାନ୍ୱିତ ହେଉଅଛନ୍ତି । ବର୍ଣ୍ଣିତ ଘଟଣାବଳୀ ପ୍ରବାହରେ ବ୍ୟାସମୁନି ଜନ୍ମର ମୂକସାକ୍ଷୀ ''ଦାସରାଜା ଗଡ଼'' ବିଲୀନ ହୋଇ ଅଦ୍ୟ ଗୃହସ୍ଥୀ ଉଦ୍ୟୋଗ କେନ୍ଦ୍ରରେ ପରିଣତ ହୋଇଅଛି । ଅଧୁନା ଆଲୋଚ୍ୟ ଦାସରାଜାଗଡ଼ ସ୍ଥଳୀରେ ପୂର୍ବରୁ ଥିବା ଏକ ତେନ୍ତୁଳୀ ବୃକ୍ଷ ଏବଂ ଗଡ଼ର ପୂର୍ବ ସୀମାକୁ ଲାଗି ଏକ ସରନା ବୃକ୍ଷ ଦୃଷ୍ଟି ଗୋଚର ହେଉଅଛି । ଉପରୋକ୍ତ ତେନ୍ତୁଳୀ ବୃକ୍ଷ ୧୯୯୫ ମସିହାରେ ଧରାଶାୟୀ ହୋଇ କ୍ରମଶଃ ଅଦୃଶ ହୋଇଅଛି । ଦାସରାଜାଗଡ଼ର ଉତ୍ତର ଦିଗରେ ଥିବା ଗଡ଼ଖାଇ ସନ୍ନିକଟ ଗ୍ରାମବାସୀଙ୍କ ଗୃହପାଳିତ ପଶୁମାନଙ୍କ ଚଲାପଥରେ ପରିଣତ ହୋଇଅଛି ।

ଏତଦ୍‌ବ୍ୟତୀତ ଉପରୋକ୍ତ ଦାସରାଜାଗଡ଼-ଖାଇର ଉତ୍ତର ତଟକୁ ଲାଗି କୋଇଲି ନଦୀ ଖଣ୍ଡିର ବେଦଖଲ ଥିବା ବିରାଟ ଭୂଖଣ୍ଡର କେତେକାଂଶକୁ ଗୃହସ୍ଥୀ ଉଦ୍ୟୋଗ କିଣିନେବା ଗାଥା ସନ୍ନିକଟ ବାସିନ୍ଦାଙ୍କ ମୁଖରେ ମୁଖରିତ ହେଉଅଛି ।

ସନ୍ ୧୯୯୨ ମସିହା ଜାନୁଆରୀ ମାସରେ ଅବାଞ୍ଛିତ ବ୍ୟକ୍ତି ବିଶେଷ ବେଦବ୍ୟାସ ଧାମ ସନ୍ନିକଟ ମହାନ ସିଦ୍ଧ ସାଧକ ମହର୍ଷି କୃଷ୍ଣ-ଦ୍ୱୈପାୟନ ବ୍ୟାସଦେବଙ୍କ ଜନ୍ମସ୍ମୃତିର ମୂକସାକ୍ଷୀ ''ଦାସରାଜା ଗଡ଼'' ଅସ୍ତିତ୍ୱକୁ ବିଲୀନ କଲେ । ତେଣୁ ଆଲୋଚକ ତା'ର ରଚିତ ''ନାଗରା'' ପୁସ୍ତକର ସତ୍ୟତାକୁ ପ୍ରତିପାଦିତ କରି ଉପରୋକ୍ତ ''ଦାସରାଜାଗଡ଼'' ସ୍ମୃତିକୁ ଉଦ୍ଧାର କରିବା ନିମିତ୍ତ ସଂସ୍କୃତିପ୍ରେମୀ ଭାଇଭଉଣୀମାନଙ୍କ ସହାୟତାରେ କଥିତ ଗଡ଼ ଉପରେ ଘଟିଥିବା ଅନ୍ୟାୟର ପ୍ରତିବାଦ ସ୍ୱରକୁ ନିମ୍ନରେ ପ୍ରଦତ୍ତ ପରିଶିଷ୍ଟରେ ପ୍ରକାଶ କରିଅଛି ।

# ପରିଶିଷ୍ଟ

## (ପ୍ରଥମ)

(କ) ଉତ୍କଳ ଭାରତୀଙ୍କ ବରପୁତ୍ର ସ୍ୱଭାବ କବି ଗଙ୍ଗାଧର ମେହେରଙ୍କର ଅମର ଲେଖନୀରେ ବର୍ଣ୍ଣିତ ବେଦବ୍ୟାସ ଧାମର ଚିର ଅମ୍ଲାନ ପ୍ରକୃତି ଏକାଧାରାରେ ଭକ୍ତି-ପ୍ରୀତି-ବାତ୍ସଲ୍ୟମମତା ପ୍ରଦାନ କରି ଅଗଣିତ ମୁନି ଋଷି କବି ଓ ଭାବୁକମାନଙ୍କୁ ଆବହମାନ କାଳରୁ ଏ ପର୍ଯ୍ୟନ୍ତ ତା'ର ପୁଣ୍ୟ ପବିତ୍ର କୋଳରେ ଆଶ୍ରୟ ଦେଇ ଆସୁଅଛି ।

ବେଦବ୍ୟାସ ଧାମର ସତ୍ୟ-ଶିବ-ସୁନ୍ଦର ସ୍ୱରୂପକୁ ପ୍ରତ୍ୟକ୍ଷଦର୍ଶୀ ରଙ୍ଗୀଜୀବ ଗଙ୍ଗାଧର ମେହେର ବାସ୍ତବ ରୂପଦେଇ ଉତ୍କଳର ମହନୀୟ ସାଂସ୍କୃତିକ ଧାର୍ମିକ ପୌରାଣିକ ପୀଠକୁ ଭାରତରେ ଯେଭଳି ପ୍ରତିଷ୍ଠିତ କରିଯାଇ ଅଛନ୍ତି, ତାହା ଅନ୍ୟତ୍ର ଦେଖିବାକୁ ବିରଳ । ସ୍ୱଭାବ କବି ଗଙ୍ଗାଧରଙ୍କ ବେଦବ୍ୟାସ ଗୀତିର କେତେକ ପଦ୍ୟାଂଶରୁ ବେଦବ୍ୟାସ ଗିରି ଦାସରାଜାଗଡ଼ ଏବଂ ବ୍ୟାସଦେବ ଜନ୍ମର ମହତ୍ତ୍ୱ ଉପଲବ୍ଧି କରାଯାଇପାରେ ଯଥା :

ବେଦବ୍ୟାସ ଗିରି ମଞ୍ଜୁ କୁଞ୍ଜମୟ
ବେଦବ୍ୟାସ ପୂତ ଜନମ ନିଳୟ ।।
କାନନ କୁସୁମ ପରାୟେ କାନନ -
ମଧ୍ୟରେ ଉତ୍କଳେ କରିଛି ଆସନ ।।
ପୂର୍ବଭାଗେ ତାର ସୂତିକା କନ୍ଦର
ବିବିଧ ପାଦପ ପ୍ରସୂନେ ସୁନ୍ଦର ।।
ଭାରତ ମଣ୍ଡଳେ ଯଥା ନୀଳା ଚଳ
ହୋଇଅଛି ପୁଣ୍ୟ ନିଚୟେ ଉଜ୍ଜ୍ୱଳ ।।
ସରସ୍ୱତୀ କୁଣ୍ଡୁଁ ବହେ ସରସ୍ୱତୀ
କ୍ଷୀଣାଙ୍ଗୀ ଉତ୍କଳେ ଯଥା ସରସ୍ୱତୀ ।।
ନିକଟରେ ଶଙ୍ଖ ସ୍ରୋତ ସଙ୍ଗପାଇ
ଦେଉଅଛି ନିଜ ଜୀବନ ମିଶାଇ ।।

.. .. ..

ସମ୍ମୁଖରେ ଦେଖ ଗୌତମ ପର୍ବତ
ବନଲକ୍ଷ୍ମୀଙ୍କର ଶ୍ୟାମ ତନୁବତ ।।
ତା ପଛକୁ ସାନୁ ଯୁଗଳ ବର୍ତ୍ତୁଳ
ମୁଖଶାଳା ସହ ଦେଉଳର ତୁଳ ।।
ତାଙ୍କ ପଛେ ରାଜେ "ପରାଶର ଗିରି"
ଧରି ଦୃଷ୍ଟି ରମ୍ୟ ନୀଳବର୍ଣ୍ଣ ଶିରୀ ।।

ଥିଲା ପରାଶର ପୁଣ୍ୟାଶ୍ରମ ଖ୍ୟାତ
ତେଣୁ ସେହି ନାମେ ହୋଇଛି ଆଖ୍ୟାତ ॥
ଏହିଠାରୁ ଆସି ପରାଶର ଯତି
ଭେଟିଲେ ବାହ୍ମଣୀ କୂଳେ ସତ୍ୟବତୀ ॥
ସତ୍ୟବତୀ ପିତା ଥିଲେ ଦାସପତି
ପାଶେ ରହିଅଛି ତାହାଙ୍କ ବସତି ॥
ନାହିଁ ସିନା ତାଙ୍କ ନିବାସ ଆଗାର
ରହିଅଛି ବାସଭୂମି ସ୍ତୂପାକାର ॥
ଚତୁର୍ଦ୍ଦିଗେ ତାର ବେଢ଼ିଛି ପରିଖା
ନିକଟକୁ ଯାଇ କରତା ପରୀକ୍ଷା ॥
ଅଦ୍ୟାବଧି ଦାସ ବଂଶଧରମାନେ
ଅଛନ୍ତି ଏ ରାଜ୍ୟେ ବହୁ ପରିମାଣେ ॥
ଗଡ଼ଖାଇ ଦେଖି ଯଦି ବୋଲ ସାନ
କର୍କରେ ତୁଲ୍ୟ କି ପ୍ରକାଣ୍ଡ ପାଷାଣ ॥
**  **  **

ବ୍ରାହ୍ମଣୀ ନଦୀର ଅପ୍ରଶସ୍ତ ଧାର
କୁମାରୀ ନାବିକା କରୁଥିଲା ପାର ॥
ମୁନି ଦାସସୁତା ନଉକାରେ ବସି
ମୁଗ୍ଧ ହେଲେ ତାର ରମ୍ୟ ରୂପେ ରସି
ବାଞ୍ଛିଲେ ସଙ୍ଗମ ବିଧାନ ନ ହୁଡ଼ି
ଅନ୍ଧକାର ପାଇଁ ସୃଜିଲେ କୁହୁଡ଼ି ॥
**  **  **

ଦାସକନ୍ୟା ବୋଲି ନ କରି ବିଚାର
ବ୍ରହ୍ମଜ୍ଞାନେ କଲେ ପୀରତି ସଞ୍ଚାର ॥
ବ୍ରହ୍ମକ୍ଷଣେ କଲେ ବ୍ରହ୍ମରେତ ନ୍ୟାସ, ଜାତହେଲେ ତହିଁ ବ୍ରହ୍ମବିଦ ବ୍ୟାସ ॥
କବିତା କଲ୍ଲୋଗ -ବେଦବ୍ୟାସ
ରଚୟିତା - ସ୍ୱଭାବକବି ଗଙ୍ଗାଧର ମେହେର

ପଦଟୀକା :

ଗୌତମ ପର୍ବତ ( ୧ ) କବି ଗଙ୍ଗାଧର ମେହେରଙ୍କ ରଚିତ ବେଦବ୍ୟାସ ଗୀତିରେ ବେଦବ୍ୟାସ ଧାମର ଗୌତମ ଆଶ୍ରମ ଗୌତମ ପର୍ବତ'' ନାମରେ ବର୍ଣ୍ଣିତ ହୋଇଛି । ବହୁକାଳୁଁ ଗୌତମ ପର୍ବତ ସ୍ଥାନୀୟ ପୁରାତନ ବାସିନ୍ଦାମାନଙ୍କ ଜନଶ୍ରୁତିରେ ''ଗୌତମ ଆଶ୍ରମ'', ''ଗୌତମ ଗୁମ୍ଫା'', ''ଗୌତମ ଘୋଟକୁରା'' ଓ ''ଗୌତମ ଘୋଟକୁଳା'' ଇତ୍ୟାଦି ନାମରେ ନାମିତ ହୋଇ ଗୌତମ ଋଷିଙ୍କୁ ଉଜ୍ଜୀବିତ

କରି ଆସୁଅଛି । ଅଧୁନା ଗୌତମ ଆଶ୍ରମ ଅବାଞ୍ଛିତ ବ୍ୟକ୍ତି ବିଶେଷଙ୍କ ଆବାସ ସ୍ଥଳୀରେ ପରିଣତ ହୋଇ ଜନଶ୍ରୁତିକୁ ବିଲୀନ କରୁଅଛି।

ପରାଶର ଗିରି (୨) : ବେଦବ୍ୟାସ ପାହାଡ଼, ପରାଶର ଗିରି ଉଭୟେ ମହାବୀର ପାର୍ବତ୍ୟମାଳାର ଦୁଇଗୋଟି ଅଂଶ ବିଶେଷ ଅଟନ୍ତି ।ବ୍ରାହ୍ମଣୀ ନଦୀ ମହାବୀର ପାର୍ବତ୍ୟମାଳ ବକ୍ଷ ଭେଦ କରି ବେଦବ୍ୟାସ ପାହାଡ଼ ଏବଂ ପରାଶର ଗିରି ବନ୍ଧନକୁ ଖଣ୍ଡିତ କରିଅଛି । ପରାଶର ଗିରିରେ ପରାଶର ମହର୍ଷିଙ୍କ ଗୁମ୍ଫା ବିଦ୍ୟମାନ । ଉକ୍ତ ଗୁମ୍ଫାରେ ପରାଶର ମୁନି ରୁଥିଲେ । ସ୍ଥାନୀୟ ପ୍ରାଚୀନ ବାସିନ୍ଦାଙ୍କ ଜନଶ୍ରୁତିରେ ''ପରାଶର ଗିରି'' ଝରିଆ ପାହାଡ଼ ଏବଂ ପରାଶର ଆଶ୍ରମ ପରାଶର ଗୁମ୍ଫା ନାମରେ ପରିଚିତ ହୋଇ ଆସିଅଛି। ଅଧୁନା ରାଉରକେଲା ରେଳଷ୍ଟେସନର ଉତ୍ତର ଦିଗରେ ଥିବା ଗୋପବନ୍ଧୁ ପଲ୍ଲୀର ଉତ୍ତରଦିଗ ପାହାଡ଼ ଉପରେ ଉପରୋକ୍ତ ପରାଶର ଗୁମ୍ଫାରେ ବୈଷ୍ଣୋଦେବୀଙ୍କ ମନ୍ଦିର ଯୋଜନା କାର୍ଯ୍ୟକାରୀ ହୋଇ ପରାଶର ଗୁମ୍ଫା ସ୍ମୃତିକୁ ବିଲୀନ କରୁଅଛି ।

# ବେଦବ୍ୟାସ ସନ୍ନିକଟ ଦାସରାଜା ଗଡ଼

ଓଡ଼ିଶାର ସୁନ୍ଦରଗଡ଼ ଜିଲ୍ଲା ମଧ୍ୟସ୍ଥ ବେଦବ୍ୟାସ ଧାମ ସନ୍ନିକଟ ପ୍ରାଚୀନ ଦାସରାଜା ଗଡ଼ ବହୁ କାଳରୁ ନିର୍ଜନ ଅବସ୍ଥାରେ କୋଇଲି (ଅନ୍ୟନାମ ଯମୁନା) ନଦୀର ପୂର୍ବତଟ ଖଣ୍ଡି ଉପରେ ଅବସ୍ଥିତ । ଏହି ଗଡ଼ର ରାଜା ଦାସରାଜା ବ୍ୟାସଦେବଙ୍କ (ବ୍ୟାସମୁନିଙ୍କ) ଅଜା ଥିବା ଗଳ୍ପ; ଜନଶ୍ରୁତି ଅଦ୍ୟାବଧି ପର୍ଯ୍ୟନ୍ତ ଘୋଷଣା କରି ଆସିଅଛି ।

ପ୍ରାୟତଃ ଆଜକୁ ପଇଁତିରିଶି ଅବା ଚାଳିଶି ବର୍ଷ ତଳେ ଦାସରାଜା ଗଡ଼ ଉପରେ ଶିମିଳି, ତେନ୍ତୁଳି, ଆମ୍ବୁଲ ଇତ୍ୟାଦି ବଡ଼ ବଡ଼ ଗଛମାନ ଥିଲା । ଏକ ବହୁ ପ୍ରାଚୀନ ବାଉଁଶ ବୁଦା ଗଡ଼ର ପୂର୍ବ ସୀମା ଭିତରେ ଗତ ୧ ୯ ୯ ୧ ମସିହା ଶେଷ ସମୟ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ଥାଇ ଗଡ଼ର ପୂର୍ବ ଗୌରବ ବହନ କରିଥିଲା । ଅଧୁନା ଉକ୍ତ ବାଉଁଶ ବୁଦାଟି ଖଳ ଲୋକଙ୍କ ଦ୍ୱାରା ସମୂଳେ ଧ୍ୱଂସ ହୋଇଯାଇଅଛି । ଗଡ଼ ସୀମାକୁ ଲାଗି ଏକ ବୃହତ ପୁରାତନ ଅଶ୍ୱଥ (ଜଡ଼ି) ବୃକ୍ଷ ପୂର୍ବରୁ କଟା ହୋଇଅଛି । ଏହାଛଡା ଭଇଁଚ କଣ୍ଟେଇ କୋଳି ଆଦି କଣ୍ଟା ବୁଦା ଗୁଡ଼ିକରେ ଗଡ଼ସ୍ଥଳୀ ଆଚ୍ଛାଦିତ ହୋଇଥିଲା । ପୁରାତନ ଭଙ୍ଗା ଇଟା ଗଡ଼ ସ୍ଥଳରେ ଏଣେ ତେଣେ ବିଛାଡ଼ି ହୋଇ ପଡ଼ିଥିଲା ।ଦାସରାଜାଙ୍କ ଇଷ୍ଟଦେବୀ ଗଡ଼ଶିରୀ ରୂପେ ଗଡ଼ ଭିତରେ ବିଚରଣ କରୁଥିଲେ । ତାଙ୍କର ନୂପୁର ଧ୍ୱନି ଶୁଣିବା କାହାଣୀ ବୃଦ୍ଧମାନଙ୍କ ମୁଖରେ ମୁଖରିତ ହେଉଥିଲା । ଉକ୍ତ ଦାସରାଜା ଗଡ଼ର ଗଡ଼ ରକ୍ଷକ ଛେଣ୍ଡଗ୍ରାମ ନିବାସୀ ସ୍ୱର୍ଗତ ଗୋବିନ୍ଦ ସା, ଲକ୍ଷ୍ମଣ ସା ଏବଂ ଶିବ ଚରଣ ସା ଥିଲେ ।

ସମୟକ୍ରମେ ସ୍ୱର୍ଗତ ଶିବ ଚରଣ ସାଙ୍କ ଅନ୍ତେ ଛେଣ୍ଡ ନିବାସୀ ଶ୍ରୀ ଜନ୍ମେଜୟ ସା ଏବଂ ଶ୍ରୀ ଜଗତ ସା ବେନି ଭାଇ ଦାସରାଜା ଗଡ଼ର ଅଧିକାରୀ ହେଲେ । ପ୍ରାୟ ବିଗତ ପଚିଶ ବର୍ଷ ଭିତରେ ଶ୍ରୀଜେନ୍ମଜୟ ସା ଏବଂ ଶ୍ରୀ ଜଗତ ସା ଉଭୟଙ୍କ ସରଳ-ଉଦାସୀଆ-ଭୋଳା ପ୍ରକୃତିର ସୁଯୋଗ ନେଇ; କେତେକ ବାହାରିଆ ଲୋକେ ଦାସରାଜା ଗଡ଼ସ୍ଥଳୀ ଅଧିକାର କରି ଏହାକୁ ଆଧୁନିକ ଛେଣ୍ଡର ନୂତନ ଜନ-ବସତିରେ ପରିଣତି କରି ଚାଲି ଅଛନ୍ତି ।

ପୂର୍ବୋକ୍ତ ବିଲୁପ୍ତ ଦାସରାଜା ଗଡ଼ର ଉତ୍ତର ଦିଗରେ ଗୋଟିଏ ନାଳ ଅଛି । ନାଳର ଉତ୍ତର ପଟେ କୋଇଲି ନଦୀ ଖଣ୍ଡିରେ ବହୁକାଳୁଁ ଝରାମାନେ (ଶିଉଳୀ କେଉଟ) ଅସ୍ଥାୟୀ କୁଡ଼ିଆ ଘର କରି ସେମାନଙ୍କର ଜୀବୀକା ନିର୍ବାହ କରି ଆସୁ ଅଛନ୍ତି ।

ଦାରସାଜା ଗଡ଼ର ପୂର୍ବରେ ଥିବା ଘୋଟକୁରା ପାହାଡ଼ର ଗୌତମ ଆଶ୍ରମ ଆଜି ନୂତନ ଜନବସତିରେ ଲୁଚି ଯାଇଅଛି ।

ଦାସରାଜା ଗଡ଼ର ପୂର୍ବରେ ଛେଣ୍ଡ ଗ୍ରାମର କିସାନ ଟୋଲା (ପଡ଼ା) ଅଛି । ଏହି ପଡ଼ାର କିସାନମାନେ ଏ ଅଞ୍ଚଳର ପୁରାତନ ବାସିନ୍ଦା ଅଟନ୍ତି । କିସାନ ପଡ଼ାକୁ ଲାଗି ଘନ ଜଙ୍ଗଲ ଥିଲା । ଜଙ୍ଗଲର ବାଘ ଭାଲୁ ଦେଖିଥିବା କଥା କିସାନମାନେ କୁହନ୍ତି । ଛେଣ୍ଡ ଗ୍ରାମାଞ୍ଚଳର କିସାନମାନେ ପ୍ରତି ତିନି ବର୍ଷରେ ଥରେ ଲେଖାଁଏ ବେଦବ୍ୟାସ ଧାମସ୍ଥିତ ବ୍ରାହ୍ମଣୀରେ ମାଘ ପୂର୍ଣ୍ଣମୀ ଦିନ ବୁଡ଼ ଦେଇ (ସ୍ନାନକରି) ପିତୃପୁରୁଷଙ୍କୁ ପିଣ୍ଡଦାନ କରି ଆସୁଅଛନ୍ତି ।

ଦାସରାଜା ଗଡ଼ ଦକ୍ଷିଣ ଦିଗ ସୀମାକୁ ଲାଗି ଛେଣ୍ଡର ଭୂୟା ପଡ଼ା ଅଛି । ଏହି ପଡ଼ାକୁ ଲାଗି ଛେଣ୍ଡର ବ୍ରାହ୍ମଣ ପଡ଼ା ଅଛି । ଉଭୟ ବ୍ରାହ୍ମଣ ଏବଂ ଭୂଁୟା ସମାଜ ଏଠିକାର ପ୍ରାଚୀନ ଅଧିବାସୀ ରୂପେ ପରିଚିତ ଅଟନ୍ତି ।

ଦାସରାଜା ଗଡ଼ର ପଶ୍ଚିମ ଦିଗରେ କୋଇଲି ଓ ଶଙ୍ଖ (ଅନ୍ୟନାମ ଗଙ୍ଗା) ନଦୀ ଦ୍ୱୟର ସଙ୍ଗମ ଜଳ ପ୍ରବାହିତ ହେଉଅଛି । ଉକ୍ତ ଜଳ ପ୍ରବାହ ବେଦବ୍ୟାସରେ ସରସ୍ୱତୀ ସହିତ ମିଳିତ ହୋଇ ବ୍ରାହ୍ମଣୀ ନାମ ଧାରଣ କରିଅଛି । ଗଡ଼ର ପଶ୍ଚିମ ଦିଗରେ ଥିବା ଶଙ୍ଖ ନଦୀରେ କାଠି ଟାଙ୍ଗର (ଇନ୍ଦ୍ରସହସ୍ରଯୋନି ପଥର) ଅଛି । ତ୍ରିବେଣୀର ଉତ୍ତରରେ ଯମୁନା ଡ଼ିପ ଅଛି । ଦାସରାଜା ଗଡ଼ର ଦକ୍ଷିଣ ପଶ୍ଚିମ କୋଣ ଅର୍ଥାତ୍ ବ୍ରାହ୍ମଣୀ ଉପତ୍ତିର ପଶ୍ଚିମ ତଟରେ ବେଦବ୍ୟାସ ଧାମ ବିରାଜମାନ କରି ଅଛନ୍ତି ।

ବର୍ଣ୍ଣିତ ଦାସରାଜା ଗଡ଼ର ଅତୀତ ଓ ବର୍ତ୍ତମାନର ସ୍ଥିତାବସ୍ଥାକୁ ଦେଖିଥିବା ସ୍ଥାନୀୟ ବାସିନ୍ଦାମାନଙ୍କ ସମ୍ମତିର ସ୍ମାରକୀ ସେମାନଙ୍କ ସ୍ୱହସ୍ତାଙ୍କିତ ଦସ୍ତଖତରୁ ଅନୁମେୟ କରାଯାଇ ପାରେ । ଦସ୍ତଖତ ନିମ୍ନରେ କ୍ରମାନୁଯାୟୀ ଉଲ୍ଲେଖ କରାଯାଇ ଅଛି ।

| କ୍ରମିକ ସଂଖ୍ୟା | ଦାସରାଜାଗଡ଼ ଦେଖିଥିବା ବ୍ୟକ୍ତିଙ୍କ ନାମ | ଗ୍ରାମ ନାମ | ଦସ୍ତଖତକାରୀଙ୍କ ବୟସ | ଦାସରାଜା ଗଡ଼ ଦେଖିଥିବା ବ୍ୟକ୍ତିଙ୍କ ଦସ୍ତଖତ ଏବଂ ତାଙ୍କର ସଂକ୍ଷିପ୍ତ ଅଭିମତ |
|---|---|---|---|---|
| ୧. | ଶ୍ରୀ ସାଧୁଚରଣ ବେହେରା | ହମିରପୁର | ୫୬ ବର୍ଷ | ଦେଖିଥିବା ସାଦରାଜ ଗଡ଼ ସତ୍ୟ ଅଟେ । ଏହିଗଡ଼ ଆମ ଭୂୟାଁ ସମାଜର ପୁରାତନ ପିଢ଼ିଥିଲା । |
| ୨. | ଶ୍ରୀ ଇନ୍ଦ୍ରମଣି ପ୍ରଧାନ | ହମିରପୁର | ୬୦ ବର୍ଷ | ଉପର ଲେଖା ବିଷୟ ସତ ଅଟେ । |
| ୩. | ଶ୍ରୀ ବାଣେଶ୍ୱର ପାଢ଼ୀ | ଛେଣ୍ଡ | ୧୦୦ ବର୍ଷ | |
| ୪. | ଶ୍ରୀ କାଶିନାଥ ପାଢ଼ୀ | ଛେଣ୍ଡ | ୬୫ ବର୍ଷ | ଦାସରାଜା ଗଡ଼ ଥିବାର ଏହା ପ୍ରକୃତ ସତ । ଏହା ପିଲାଦିନରୁ ମୁଁ ଦେଖି ଆସୁଅଛି । କିନ୍ତୁ ଦୁଃଖର ବିଷୟ ଏହି ଯେ ଆମ୍ଭର ଗଉଁଟିଆ ସାହେବଙ୍କୁ ନାନା ରକମର ଲୋଭ ଦେଖାଇ ବାହାର ଲୋକେ କିଣି ନେଇଥାଇଚନ୍ତି । |
| ୫. | ଶ୍ରୀ ଗୌତମ ପାଢ଼ୀ | ଛେଣ୍ଡ | ୮୦ ବର୍ଷ | |
| ୬. | ଶ୍ରୀ ବାମଦେବ ମିଶ୍ର ବେଦବ୍ୟାସ ରାମଜି ପୂଝାରୀ | ବେଦବ୍ୟାସ | ୬୨ ବର୍ଷ | ମୁଁ ଦାସରାଜାଙ୍କର ଗଡ଼ ପିଲା ଦିନଠାରୁ ଦେଖି ଆସିଅଛି । |

| | | | | |
|---|---|---|---|---|
| ୭. | ଶ୍ରୀ ଉଦୟ ପ୍ରଧାନ | ବାଙ୍କିଆ | ୫୨ ବର୍ଷ | ବ୍ୟାସମୁନି ଅଞ୍ଚଳ ଦାସରାଜାଗଡ଼ ଲିଷ୍ଟି ହେବା ଜାଣି ଦୁଃଖିତ । ଏ ଗଡ଼ ଆମ୍ଭ ସମାଜର ପିଢ଼ ଥିଲା । |
| ୮. | ଶ୍ରୀ ହୃଷିକେଶ ପଣ୍ଡା | ଝିରପାଣି | ୭୮ ବର୍ଷ | ମୁଁ ବେଦବ୍ୟାସ ମେଳା ଦେଖିବା ପାଇଁ ଆମ ବାପାଙ୍କ ସଙ୍ଗେ ମେଳା ଦେଖି ଯିବା ସମୟରେ ଆମ ବାପା ସ୍ୱର୍ଗତ ନିଶାକର ପଣ୍ଡା ଆମକୁ ଦାସରାଜା ଗଡ଼ ଦେଖାଇ ଥିବାରୁ ଦାସଗଡ଼ ଦେଖିଥିଲି । |
| ୯. | ଶ୍ରୀ ଅନନ୍ତ ଚରଣ ଦାଶ | ଚୁମକେଲା | ୬୦ ବର୍ଷ | |
| ୧୦. | ଶ୍ରୀ ରଘୁନାଥ ସିଙ୍ଗ | ବ୍ରାହ୍ମଣୀତରଙ୍ଗ | ୬୫ ବର୍ଷ | मैं ब्यासध्याम का दाशराजा गड देखा |
| ୧୧. | ଶ୍ରୀ ଗୋପୀ ଟପୋ | ଛେଣ୍ଡ କିଶାନପଡ଼ା | ୯୫ ବର୍ଷ | ଦାସରାଜା ଗଡ଼ ମୁଁ ପିଲାଦିନରୁ ଦେଖିଆସୁଛି |



( ଟିପଚିହ୍ନ ସହି ଗୋପୀ ଟପୋଙ୍କର)
ସାକ୍ଷୀ- ଭିକା ମାଝି, ତା ୨.୩.୯୨

| | | | | |
|---|---|---|---|---|
| ୧୨. | ଶ୍ରୀ ଗୋସାଇଁ କିଶାନ | ଛେଣ୍ଡ କିଶାନପଡ଼ା | ୫୫ ବର୍ଷ | ଦାସ ରାଜାଙ୍କ ଗଡ଼ ମୁଁ ପିଲାଦିନରୁ ଦେଖିଆସୁଅଛି । |



(ଏ ଟିପଚିହ୍ନସହି ଗୋସାଇଁ କିଶାନଙ୍କର)
ସାକ୍ଷୀ- ସୁବଳ ଚନ୍ଦ୍ର ମଲ୍ଲିକ, ତା ୨.୩.୯୨

| | | | | |
|---|---|---|---|---|
| ୧୩. | ଶ୍ରୀ ଖୁନୁ ସିଂହ | ବ୍ରାହ୍ମଣୀ ତରାଙ୍ଗ | ୫୫ ବର୍ଷ | मैं दासराजा गड देखा हूँ । मेरी पिताजी स्वर्गत काशिनाथ सींग मुझे दासराजागड़ के बारे में बतायह थे । |
| ୧୪. | ଶ୍ରୀ ସୁଦର୍ଶନ କର | ରିଉଁ | ୯୦ ବର୍ଷ | ଦାସରାଜା ଗଡ଼ ବିଷୟ ସତ । ସେଠାରେ ପ୍ରାଚୀନ ବାଉଁଶ ବୁଦା ଥିଲା । ବାଉଁଶ ବୁଦାର |

କିଛି ଦୂରରେ ଗଡ଼ଶିରି ଥିଲା । ଗଡ଼ରେ ବହୁ ପ୍ରାଚୀନ ଇଟା ପଡ଼ିଥିଲା । ଏହା ମୁଁ ମୋର ଦଶ ବର୍ଷ ବୟସରୁ ଦାସରାଜା ଗଡ଼ ଦେଖି ଆସିଛି । ଦାସ ବ୍ୟାସଦେବଙ୍କ ଅଜା ଥିଲେ ।

୧୫. ଶ୍ରୀ ଅର୍ଜୁନ ରାଜ୍ ବଲାଣି ୮୦ ବର୍ଷ

ଉତ୍କଳର ବରେଣ୍ୟ ପ୍ରକୃତି କବି ରଙ୍ଗାଜୀବ ଗଙ୍ଗାଧର ମେହେର ତାଙ୍କ ଗ୍ରନ୍ଥାବଳୀରେ ବେଦବ୍ୟାସ ଧାମର ପ୍ରକୃତି ଶୋଭା ବର୍ଣ୍ଣନାରେ ଲେଖିଥିବା ଏହି ବ୍ୟାସ ଗୁମ୍ଫା, ସରସ୍ୱତୀ କୁଣ୍ଡ, ଇନ୍ଦ୍ର ସହସ୍ରାକ୍ଷ ହୋଇ ପଡ଼ିଥିବା ପାଷାଣ, ଅହଲ୍ୟା ପାଷାଣ, ଦାସ ରାଜା ଗଡ଼, ପରାଶର ଗୁମ୍ଫା ଆଦି ମୁଁ ସ୍ୱଚକ୍ଷୁରେ ଦେଖି ଅପାର ଆନନ୍ଦ ଲାଭ କରିଛି ଏବଂ କରୁଅଛି ।
ମୁଁ ମୋର ନାଗରା ମହାତ୍ମ୍ୟ କବିତା ସଙ୍କଳନ - ପାଣ୍ଡୁଲିପିରେ ବ୍ୟାସ ଦେବଙ୍କ ଜନ୍ମ ବୃତାନ୍ତ ନାବେ ନାବିକାର କୀର୍ତ୍ତି ଉଦନ୍ତରେ ମଧ ବର୍ଣ୍ଣନା କରିଅଛି । ଦୁଃଖର ବିଷୟ ଆଜି ସେହି ଦାସରାଜା ଗଡ଼ ଅନ୍ୟରୂପ ଧାରଣ କରୁଅଛି

ଉପରୋକ୍ତ "ବେଦବ୍ୟାସ ଧାମ ସନ୍ନିକଟ ଦାସରାଜା ଗଡ଼" ବିବରଣୀ ସିଂହାବଲୋକନ (ଯମସରା କେଶରୀ ଗଡ଼ ଓ ରାଉରକେଲା) ପ୍ରକାଶିତ କାବ୍ୟ ଏବଂ "ନାଗରା" ପାଣ୍ଡୁଲିପିର ଲେଖକ ମୁଁ ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ର; ଠିକଣା ଗ୍ରାମ - ତାମରା, ପୋ.ଅ. - କାନପୁର, ଜିଲ୍ଲା - କଟକ ବର୍ତ୍ତମାନ ଠିକଣା, ଘର ଡି-୨୯୪, ସେକ୍ଟର-୮, ପୋ.ଅ.- ରାଉରକେଲା-୯, ଜିଲ୍ଲା-ସୁନ୍ଦରଗଡ଼ ଲେଖିଅଛି । ମୁଁ ମୋର ପୂର୍ବ ପ୍ରକାଶିତ "ସିଂହାବଲୋକ" ଏବଂ ଯନ୍ତସ୍ଥ ଥିବା "ନାଗରା" ପାଣ୍ଡୁଲିପି ଉଭୟରେ "ବେଦବ୍ୟାସ ସନ୍ନିକଟ ଦାସରାଜା ଗଡ଼" ବିଷୟ ଉଲ୍ଲେଖ କରିଅଛି ।

ଅଧୁନା ଦାସରାଜା ଗଡ଼ ସ୍ଥଳୀ ରାଉରକେଲାର ଜନୈକ ମାରୁଆଡ଼ି ଏବଂ ଅନ୍ୟ କେତେକ ବ୍ୟକ୍ତି ବିଶେଷଙ୍କ ଦ୍ୱାରା ଅଧିକୃତ ହୋଇ ନୂତନ ଜନବସତିରେ ପରିଣତ ହୋଇ ଯାଇଅଛି । ମୁଁ ମୋର ଲେଖାର ସତ୍ୟତା ପ୍ରତିପାଦିତ କରିବାକୁ ଯାଇ ଉଲ୍ଲିଖିତ ବିବରଣୀ ପ୍ରସ୍ତୁତ କରି, ସୁନ୍ଦରଗଡ଼ ଜିଲ୍ଲା ପାନପୋଷ ମହକୁମାର ସ୍ଥାନୀୟ ପୁରାତନ ବାସିନ୍ଦାମାନଙ୍କ ମଧ୍ୟରୁ ପନ୍ଦର ଜଣ ଦରଦୀ ସଂସ୍କୃତି ପ୍ରେମୀ ବ୍ୟକ୍ତି ମାନଙ୍କର ଦସ୍ତଖତ ସହିତ ସେମାନଙ୍କର ସଂକ୍ଷିପ୍ତ ଅଭିମତ (ସଂଗ୍ରହକରି) "ବେଦବ୍ୟାସ ଧାମ ସନ୍ନିକଟ ଦାସରାଜା ଗଡ଼" ବିବରଣୀରେ ପ୍ରକାଶ କରିଅଛି ।

ଆଶା ଦେଶର ସଂସ୍କୃତି ପ୍ରେମୀ ଭାଇ ଭଉଣୀମାନେ ବେଦବ୍ୟାସ ଧାମରେ ମହାନ ସାଧକ ଋଷି

କୃଷ୍ଣ ଦ୍ୱୈପାୟନ ବ୍ୟାସଦେବଙ୍କ ଜନ୍ମ କୀର୍ତ୍ତି ସମ୍ପର୍କୀତ ଦାସରାଜା ଗଡ଼ ସ୍ମୃତି ପୀଠକୁ ଉଦ୍ଧାର କରି ସନାତନ ସଂସ୍କୃତିର ମଙ୍ଗଳ ବିଧାନ କରିବେ ।

ରାଉରକେଲା                                                            ॥ ଇତି ॥

ତା ୩୧.୩.୧୯୯୨ ମସିହା                    "ସିଂହାବଲୋକ" ଏବଂ "ନାଗରା" ଲେଖକ

ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ର

ଘର ଡି-୨୯୪, ସେକ୍ଟର-୮

ପୋ - ରାଉରକେଲା-୯, ଜିଲ୍ଲା - ସୁନ୍ଦରଗଡ, ଓଡ଼ିଶା

ଉପରୋକ୍ତ "ବେଦବ୍ୟାସ ସନ୍ନିକଟ ଦାସରାଜା ଗଡ଼" ବିବରଣୀର ଅବିକଳ ନକଲ (ଫଟକପି) ନିମ୍ନୋକ୍ତ ବିଭିନ୍ନ ବିଭାଗୀୟ ମୁଖ୍ୟ କର୍ମକର୍ତ୍ତାଙ୍କ ନିକଟକୁ ଅନୁଧାନାର୍ଥେ ପ୍ରେରଣ କଲି ।

୧. ମାନ୍ୟବର ମନ୍ତ୍ରୀ ଶ୍ରୀଯୁକ୍ତ ଶରତ କୁମାର କର
   ପର୍ଯ୍ୟଟନ, କ୍ରୀଡ଼ା, ସଂସ୍କୃତି, ସୂଚନା ଓ ଲୋକସମ୍ପର୍କ ବିଭାଗ
   ସା/ପୋ - ଭୁବନେଶ୍ୱର, ଓଡ଼ିଶା
   ଉପରୋକ୍ତ ବେଦବ୍ୟାସ ସନ୍ନିକଟ ଦାସରାଜା ଗଡ଼ ବିବରଣୀର ଅବିକଳ ନକଲ
   (ଫଟ କପି) ଅନୁଧ୍ୟାନ୍ୟାର୍ଥେ ପ୍ରେରଣ କଲି ।
୨. ମାନ୍ୟବର ଶ୍ରୀଯୁକ୍ତ ସୁନ୍ଦରଗଡ ଜିଲ୍ଲାପାଳ, ସା/ପୋ - ସୁନ୍ଦରଗଡ଼, ଓଡ଼ିଶା ।
୩. ଡକ୍ଟର ପ୍ରବୋଧ କୁମାର ମିଶ୍ର, ପି.ଏଚ୍.ଡି., ଡି. ଲିଟ୍ ।
   ମୁଖ୍ୟ ଇତିହାସ ପ୍ରଫେସର, ସି/୨୩, ସା/ପୋ - ସମ୍ବଲପୁର ବିଶ୍ୱବିଦ୍ୟାଳୟ, ଜ୍ୟୋତି ବିହାର
   ପିନ୍ କୋଡ - ୭୬୮ ୦୧୯, ଓଡ଼ିଶା ।
୪. ସୁପରିନ୍‌ଟେଣ୍ଡେଣ୍ଟ, ଓଡ଼ିଶା ରାଜ୍ୟ ମ୍ୟୁଜିଅମ, ସା/ପୋ - ଭୁବନେଶ୍ୱର, ଓଡ଼ିଶା ।
୫. ସୁପରିନ୍‌ଟେଣ୍ଡେଣ୍ଟ, ଓଡ଼ିଶା ରାଜ୍ୟ ଅଭିଲେଖାଗାର, ସା/ପୋ - ଭୁବନେଶ୍ୱର, ଓଡ଼ିଶା ।
୬. ଶ୍ରୀଯୁକ୍ତ ଦାଶରଥି ପଟ୍ଟନାୟକ, ପ୍ରତିଷ୍ଠାତା ଅରବିନ୍ଦ ସଂଗ୍ରହାଳୟ, ଗ୍ରାମ - ଉଦୟପୁର
   ପୋ.ଅ - ନୂଆଗାଁ - ୭୫୨୦୮୩, ଜିଲ୍ଲା - ନୟାଗଡ, ଓଡ଼ିଶା ।
୭. "ସମାଜ" ସମ୍ପାଦକ ପଦ୍ମଶ୍ରୀ ଡକ୍ଟର ରାଧାନାଥ ରଥ, ସା- ସତ୍ୟବାଦୀ ପ୍ରେସ,
   ପୋ.ଅ - କଟକ-୧, ଓଡ଼ିଶା, ପିନ୍ କୋଡ - ୭୫୩ ୦୦୧ ।
୮. "ପ୍ରଜାତନ୍ତ୍ର" ସମ୍ପାଦକ ଶ୍ରୀଯୁକ୍ତ ଭର୍ତ୍ତୃହରି ମହତାବ, ସା-ପ୍ରଜାତନ୍ତ୍ର ପ୍ରଚାର ସମିତି ଏବଂ ପ୍ରଜାତନ୍ତ୍ର
   ପ୍ରେସ, ପୋ.ଅ - କଟକ-୨, ପିନ୍ କୋଡ - ୭୫୩ ୦୦୨, ଓଡ଼ିଶା ।
୯. "ସମ୍ବାଦ" ମୁଖ୍ୟ ସମ୍ପାଦକ ଶ୍ରୀଯୁକ୍ତ ସୌମ୍ୟ ରଞ୍ଜନ ପଟ୍ଟନାୟକ ସା - ପ୍ରିୟ ଦର୍ଶିନୀ ପ୍ରିଣ୍ଟର୍ସ,
   ବି/୨୮, ଇଣ୍ଡଷ୍ଟ୍ରିଆଲ ଇଷ୍ଟେଟ୍, ପୋ.ଅ- ରାଉରକେଲା-୪, ଜିଲ୍ଲା - ସୁନ୍ଦରଗଡ଼, ଓଡ଼ିଶା,
   ପିନ୍ କୋଡ -୭୬୯୦୦୪ ।
୧୦. ଡିରେକ୍ଟର ପ୍ରଡକ୍ସନ, ଦୂରଦର୍ଶନ କେନ୍ଦ୍ର, ସା - ତୁଳସୀପୁର, ପୋ- କଟକ-୮, ଓଡ଼ିଶା ।
୧୧. ଶ୍ରୀଯୁକ୍ତ ଦେବାନନ୍ଦ ଅମାତ, ପୂର୍ବତନ ଏମ୍.ପି., ସୁନ୍ଦରଗଡ଼ , ସା/ପୋ - ବଲାଣି,
   ଭାୟା - ଲାଠିକଟା, ଜିଲ୍ଲା - ସୁନ୍ଦରଗଡ଼, ଓଡ଼ିଶା ।
୧୨. ମାନନୀୟ ସଭାପତି, ପ୍ରଗତି ଉତ୍କଳ ସଂଘ, ସା - ବି/୯, ଫକୀର ମୋହନ ନଗର, ସେକ୍ଟର-
   ୭, ପୋ- ରାଉରକେଲା-୩, ଜିଲ୍ଲା - ସୁନ୍ଦରଗଡ଼, ଓଡ଼ିଶା ।

# ଦାସରାଜା ଗଡ଼ର ପ୍ରତ୍ୟକ୍ଷଦର୍ଶୀ ସାକ୍ଷୀବୃନ୍ଦଙ୍କ ଓଡ଼ିଆ ବିବରଣୀ

ଉତ୍କଳର ବେଦବ୍ୟାସ ଧାମ ସନ୍ନିକଟ ଅଧୁନା ବିଲୁପ୍ତ ହୋଇଥିବା ଆଲୋଚ୍ୟ ''ଦାସରାଜା ଗଡ଼ର'' ପ୍ରତ୍ୟକ୍ଷଦର୍ଶୀ ସ୍ଥାନୀୟ ପ୍ରାଚୀନ ବାସିନ୍ଦାମାନଙ୍କର କଥିତ ''ଦାସରାଜାଗଡ଼'' ଉପରେ ପ୍ରଦତ୍ତ ଦଶଗୋଟି ବିବରଣୀ ନିମ୍ନରେ ଉଲ୍ଲେଖ କରାଯାଇଅଛି । ଯଥା :

(୧)

ବେଦବ୍ୟାସ ଧାମ ନିକଟରେ ଥିବା ଦାସରାଜା ଗଡ଼ ଉପରେ ଅଭିମତ

ମୁଁ ଶ୍ରୀ ସିତାରାମ ସାହୁ ବୟସ ୭୪ ବର୍ଷ, ଝିରପାଣି ରିସେଟଲମେଣ୍ଟ କଲୋନୀରେ ରହୁଅଛି।

ଅତୀତରେ ମୁଁ ମୋର ପିତୃପୁରୁଷମାନଙ୍କ ସାହିତ ନିଜ ଗ୍ରାମ ତୁମ୍ବକେଲାରେ ବାସ କରିଥିଲି ।

କୋଇଲି ଓ ଶଙ୍ଖ ନଦୀର ମିଳନରେ ଥିବା ନଦୀପଠାରେ କୃଷ୍ଣ ଦ୍ୱୈପାୟନ ବ୍ୟାସ ମୁନି ଜନ୍ମ ହେବା ବିଷୟ, ବାପା ଏବଂ ଆମର ଗଞ୍ଜୁଙ୍କ ଠାରୁ ଶୁଣିଥିଲି । ଆମ୍ଭର ଶିକ୍ଷକ ୰ଯୋଗେନ୍ଦ୍ର ମିଶ୍ର, ୰ ଭଗବାନ ନନ୍ଦ ଆମ୍ଭମାନଙ୍କୁ ବ୍ୟାସଜନ୍ମ ଏବଂ କୋଇଲି ନଦୀର ପୂର୍ବ କୂଳରେ ଥିବା ଦାସରାଜା ଗଡ଼ (ବୁଦେଲ ଗଡ଼) ବିଷୟ ଟିପା ଖାତାରେ ଲେଖି ପଢ଼ାଇଥିଲେ । ପିଲାଦିନେ ଦାସରାଜାଗଡ଼ ଅଞ୍ଚଳ ଜଙ୍ଗଲ ଥିଲା । ମୁଁ ଏହି ଗଡ଼ ଦେଖିଥିଲି । ଆଜି ଦାସରାଜାଗଡ଼ ବିକ୍ରିହୋଇ ବାହାରିଆ ଲୋକଙ୍କ ବାସଗୃହରେ ପରିଣତ ହୋଇଯିବା ଘଟଣା, ଅତ୍ୟନ୍ତ ଦୁଃଖ-ଦାୟକ ଘଟଣା ।

ଲିଖିତ ଦାସରାଜା ଗଡ଼ ଉଦ୍ଧାର ପାଇଁ ମୁଁ ପରମେଶ୍ୱରଙ୍କ ଚରଣରେ ପ୍ରାର୍ଥନା କରୁଅଛି ।

ଶ୍ରୀ ସିତାରାମ ସାହୁ । ବିନୀତ ।

ତା ୨୧.୯.୧୯୯୩ — ସ୍ୱା- ଶ୍ରୀ ସିତାରାମ ସାହୁ

ଝିରପାଣି କଲୋନୀ — ଝିରପାଣି ରିସେଟେଲମେଣ୍ଟ କଲୋନୀ

ବର୍ତ୍ତମାନ ବୟସ ୭୪ ବର୍ଷ

(୨)

ମୁଁ ଶ୍ରୀ ମଙ୍ଗୁଲୁ ସାହୁ, ସା - ପାନପୋଷ ମହକୁମାର ବେଦବ୍ୟାସ ଧାମ ପୂର୍ବ ଦିଗରେ ଥିବା ଛେଣ୍ଡ ଗ୍ରାମର ଭୂୟାଁ ଟୋଲାରେ ବାସକରେ । ମୋର ପିତା ୰ ଖରବୁଲା ସା, ଅଜା ବଣ୍ଡକୋ ସା ଏବଂ ଅଜାର ପିତା ୰ ଅର୍ଜୁନ ସା ଆମର ଛେଣ୍ଡ ଗ୍ରାମରେ ବାସ କରିଥିଲେ ।

ମୁଁ ମୋର ବାପା ଏବଂ ଗ୍ରାମର ଅନ୍ୟ ବୁଢ଼ାମାନଙ୍କ ଠାରୁ ଆମ ଗାଁର ଉତ୍ତର ମୁଣ୍ଡରେ ଥିବା ଦାସରାଜା ଗଡ଼ (ବୁଦେଲ ଗଡ଼) କାହାଣୀ ଶୁଣିଅଛି । ଏହି ଦାସରାଜା ଗଡ଼କୁ ପିଲାଦିନୁଁ ଆଜିଯାଏଁ ଦେଖି ଆସୁଅଛି ।

''ନାଗରା'' ପୁସ୍ତକର ଲେଖକ ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ରଙ୍କ ରଚିତ ବେଦବ୍ୟାସ ଧାମ ସନ୍ନିକଟ ଦାସରାଜା ଗଡ଼ ବିବରଣୀ ପଢ଼ି ଅଛି । ଉଣେଇଶିଶହ ବୟାନବେ ମସିହା ମାର୍ଚ୍ଚ ଏକତିରିଶ ତାରିଖରେ ଏହି ବିବରଣୀ ଲେଖା ହୋଇଅଛି । ଏଥିରେ ଦସ୍ତଖତ କରିଥିବା ବ୍ୟକ୍ତିମାନଙ୍କୁ ମୁଁ ଜାଣିଛି । ଏହି ବିବରଣୀ ସତ୍ୟଅଟେ ।

ବ୍ୟାସମୁନି ଅଜା ଦାସରାଜା ଗଡ଼ ଉଦ୍ଧାର ପାଇଁ ମୁଁ ଆମର ରାଜ୍ୟେଶ୍ୱରୀ ଶ୍ରୀ ଶ୍ରୀ ଜଗଦ୍ଦେଶ୍ୱରୀ ଦେବୀ, ବୁଢ଼ାବର ଦେବତା ଏବଂ ବ୍ୟାସମୁନିଙ୍କୁ ପ୍ରାର୍ଥନା କରୁଅଛି ।

ଶ୍ରୀ ମଙ୍ଗୁଳୁ ସା — ସ୍ୱା- ଶ୍ରୀ ମଙ୍ଗୁଳୁ ସା

ତା ୨୦.୧୦.୧୯୯୩ — ଗ୍ରାମ - ଛେଣ୍ଡ

ଗ୍ରାମ-ଛେଣ୍ଡ — ବୟସ ୮୦ ବର୍ଷ

(୩)

ମୁଁ ଶ୍ରୀ ଗୋଲାପ କଂସାରୀ, ଗ୍ରାମ - ବାଗୁଡ଼ିରେ ବାସ କରିଥିଲି । ମୋର ବାପା ୰ ହଟୀ କଂସାରୀ, ଜେଜେବାପା (ଅଜା) ୰ ଗଦା କଂସାରୀ ବାଗୁଡ଼ିରେ ବାସ କରିଥିଲେ । ଏମାନେ ନାଗରା ଜମିଦାରଙ୍କର ବାଣୁଆ ଥିଲେ । ବେଦବ୍ୟାସର ଛେଣ୍ଡ ଗ୍ରାମ ଉତ୍ତର ମୁଣ୍ଡରେ ଥିବା ଦାସରାଜାଗଡ଼ ମୁଁ ପିଲାଦିନୁଁ ଦେଖି ଆସିଅଛି । ମୋର ବାପା ଅଜା ଦାସରାଜା ଗଡ଼ ଦେଖିଥିଲେ । ଗଡ଼ ବିଷୟ ଆମକୁ କହିଥିଲେ । ଏହି ଗଡ଼ରେ ମୁଁ ଆମେ ଚଲାବୁଲା କରୁଥିଲୁ । ଏବେ ଦାସରାଜା ଗଡ଼ ବିକ୍ରି ହେବା ଶୁଣି ମୁଁ ଦୁଃଖିତ ହେଲି । ବ୍ୟାସମୁନି ଦାସରାଜାଗଡ଼କୁ ରକ୍ଷା କରନ୍ତୁ ।

ଶ୍ରୀ ଗୋଲାପ କଂସାରୀ — । ଇତି ।

ସ୍ୱା- ଶ୍ରୀ ଗୋଲାପ କଂସାରୀ

ତା ୮.୧୧.୧୯୯୩ — ଝିରପାଣି କଲୋନୀ

ଝିରପାଣି କଲୋନୀ — ବୟସ ୭୦ ବର୍ଷ

(୪)

ମୁଁ ଶ୍ରୀ ପର୍ଶୁରାମ ପଣ୍ଡା, ଗ୍ରାମ - ଲାସେକୁମ ଜରିଆ, ଜିଲ୍ଲା-ସୁନ୍ଦରଗଡ଼ରେ ବାସ କରେ । ବେଦବ୍ୟାସ ସନ୍ନିକଟ ଛେଣ୍ଡ ଗ୍ରାମର ଉତ୍ତର ଦିଗରେ ଥିବା ଦାସରାଜାଗଡ଼ର କିଛି ଭଗ୍ନାବଶେଷ ପିଲାବେଳେ ଦେଖିଅଛି । ସେଠାରେ ଗୌତମ ଋଷିଙ୍କର ଗୋଟିଏ ପୀଠ ଥିବାର କଥା ଜାଣିଛି । ତାକୁ ''ଗୌତମ ଗୁଟକା'' ବୋଲି କୁହାଯାଉଥିଲା । ଏହି ପୁରାତନ ଯାଗାଟି ବିକ୍ରି ହୋଇଯିବା କଥା ଶୁଣି

ଦୁଃଖିତ ହେଲି । ଉକ୍ତ ଦାସରାଜାଗଡ଼ ଜାଗାଟି ଉଦ୍ଧାର କରାଗଲେ ବ୍ୟାସଧାମର ଗୌରବ ବଢ଼ିବ ।

। ଇତି ।

ସ୍ୱା- ଶ୍ରୀ ପର୍ଶୁରାମ ପଣ୍ଡା

ତା ୧୩.୧୧.୧୯୯୩ ଗ୍ରାମ - ଲାସେକୁମଝରିଆ

ଝିରପାଣି ବୟସ ୮୬ ବର୍ଷ

(୫)

ଆମ୍ଭେ ଶ୍ରୀ ଈଶ୍ୱର ଚନ୍ଦ୍ର ନନ୍ଦ, ଗ୍ରାମ - ବିଯୁବନ, ପିତା - ୰ ପରମାନନ୍ଦ ନନ୍ଦ ଦାସରାଜା ଗଡ଼ ସମନ୍ଧେ ଯାହା ଜାଣୁ ତାହା ନିମ୍ନରେ ପ୍ରକାଶ କରି ସ୍ୱାକ୍ଷର କଲୁଁ ।

ଯେ : କୃଷ୍ଣ ଦ୍ୱୈପାୟନ ବ୍ୟାସଦେବଙ୍କ ମାତାମହ ଦାସରାଜାଙ୍କ ଗଡ଼ କୋଇଲି ନଦୀ ପୂର୍ବପଟେ (ସଙ୍ଗମ ସ୍ଥଳର ପୂର୍ବପଟେ) ଆଜକୁ ଅନେକ ଦିନରୁ ଖାଇ ରୁପରେ ଜଙ୍ଗଲି ଗଛ, ବାଉଁଶ ବଣ ଆକାରରେ ପଡ଼ିରହିଥିଲା ସନ୍ ୧୯୫୭ ପର୍ଯ୍ୟନ୍ତ । ସେଇଦିନୁଁ ସେ ପଟେ ମୋର ଯାତାୟତ ହୋଇ ପାରୁନାହିଁ ।

କିନ୍ତୁ ହଠାତ୍ ଏଇ କିଛିଦିନ ହେଲା ମୁଁ ଯାତାୟତ ବେଳେ ଦେଖିବାକୁ ପାଇଲି ଯେ ସେଠାରେ କୋଠାବାଡ଼ି ତିଆରି ହୋଇଅଛି । ଏହା ଦେଖି ଜୀବନରେ ଗୋଟାଏ ବଡ଼ ଧକ୍କା ଅନୁଭବ କଲି । ମୋର ଦରିଦ୍ରତା ହେତୁ ମୁଁ କିଛିତ କରି ପାରିବି ନାହିଁ, କେବଳ ଈଶ୍ୱର ହିଁ ଭରସା ।

ସ୍ୱା- ଶ୍ରୀ ଈଶ୍ୱର ଚନ୍ଦ୍ର ନନ୍ଦ

ତା ୨୭.୧୨.୧୯୯୩ ବିଯୁବନ, ଥା - ବିରମିତ୍ରପୁର

ବିଯୁବନ , ଥା : ବିରମିତ୍ରପୁର ବୟସ ୮୦ ବର୍ଷ

(୬)

ମୁଁ ଶ୍ରୀ ବୃନ୍ଦାବନ ସିଂ, ପିତା ୰ ଗୋବିନ୍ଦ ସିଂ, ଅଜା ୰ ବାହାଦୁର ସିଂ ପ୍ରାଚୀନ ତୁମ୍ୱକେଲା ଗ୍ରାମରେ ବାସ କରିଥିଲୁ । ବର୍ତ୍ତମାନ ମୁଁ ତୁମକେଲାରେ ବାସ କରୁଅଛି ।

ମୁଁ ନାଗରା ରାଜ୍ୟ ଶେଷ ଜମିଦାର ୰ ଶିବ ନାରାୟଣ ସିଙ୍ଗ ମହାପାତ୍ରଙ୍କ ଅଧିନରେ ଜଙ୍ଗଲ ବିଭାଗରେ କାମ କରୁଥିଲି । ବ୍ରାହ୍ମଣୀ ସଙ୍ଗମର କୋଇଲି ନଦୀ ପୂର୍ବ ଖଣ୍ଡିରେ ଥିବା ଦାସ ରାଜା ଗଡ଼କୁ ମୁଁ ପିଲାଦିନୁଁ ଦେଖି ଆସୁଅଛି । ଏହି ଗଡ଼ ଛେଣ୍ଡ ଭୂୟାଁ ବସ୍ତିର ଉତ୍ତର ମୁଣ୍ଡରେ ଅଛି ।

ଏହି ଦାସରାଜା ଗଡ଼ ବ୍ୟାସମୁନିଙ୍କ ଅଜାଙ୍କ ଗଡ଼ ଥିବା ବିଷୟ ମୁଁ ଗ୍ରାମର ବୁଢ଼ାମାନଙ୍କ ଠାରୁ ଶୁଣିଥିଲି । ନାଗରା ଜମିଦାର ବଂଶ ଦାସରାଜାଗଡ଼କୁ ସମ୍ମାନ ଦେଉଥିଲେ । ଏହି ଗଡ଼ ଅତୀତରେ ବଣ ବୁଦାରେ ପୂରି ରହିଥିଲା । ପୁରୁଣା ବାଉଁଶ ବୁଦା ଓ ଶିମିଳି ଗଛ ଥିଲା । ବର୍ତ୍ତମାନ ଦାସରାଜାଗଡ଼ରେ ବାହାରିଆ ଲୋକେ ଘରକରି ରହିବା ଦୁଃଖଦାୟକ ଘଟଣା ଅଟେ । ପ୍ରଭୁ ଦାସରାଜାଗଡ଼କୁ ଉଦ୍ଧାର କରନ୍ତୁ ।

। ବିନୀତ ।

ତା ୨.୧.୧୯୯୪ ସ୍ୱା- ଶ୍ରୀ ବୃନ୍ଦାବନ ସିଂ

ଗ୍ରାମ - ତୁମ୍ୱକେଲା, ସୁନ୍ଦରଗଡ ବୟସ ୭୦ ବର୍ଷ

(୭)

ମୁଁ ଶ୍ରୀ ଦିବାକର ଅଓ୍ୱସ୍ତି, ପିତା ୰ ନନ୍ଦଲାଲ ଅଓ୍ୱସ୍ତି, ଅଜା ୰ ଗୋକୁଳ ଅଓ୍ୱସ୍ତି, ଗ୍ରାମ - ଟିମ୍‌ଯୋରରେ ବାସ କରେ ।

ରଘୁନାଥ ପାଲ୍ଲୀ ଥାନା ଅଧିନରେ ଥିବା ଛେଣ୍ଡଗ୍ରାମ ଭୁୟାଁ ପଡ଼ାର ଉତ୍ତର ଦିଗରେ ଦାସରାଜାଗଡ଼ କୋଇଲି ନଦୀର ପୂର୍ବଧାର ଖଣ୍ଡିରେ ଅଛି । ପିଲାଦିନେ ମୁଁ କୁଆଁରମୁଣ୍ଡା ପଢ଼ିବାକୁ ଯିବାବେଳେ, ଛେଣ୍ଡବାଟ ଦେଇ ଯାଉଥିଲି । ସମୟ ସମୟରେ ମୁଁ ମୋ ସାଥୀମାନଙ୍କ ସହିତ ଦାସରାଜାଗଡ଼, ଗୌତମ ଘୋଟକୁରା, ନାଗରା ଗଡ଼ ଇତ୍ୟାଦି ଯାଗା ଗୁଡ଼ିକରେ ଖେଳି ବୁଲି ଯାଉଥିଲୁ । ଦାସରାଜାଗଡ଼ରେ ଶିମିଳି ବାଉଁଶ ଆକୁଲ ଗଛ ଥିଲା । ଭଙ୍ଗାଇଟା ଗଡ଼ ଭିତରେ ପଡ଼ିଥିବା ଦେଖିଥିଲୁ । ଏହି ଗଡ଼ ବେଦବ୍ୟାସର କୃଷ୍ଣ ଦ୍ୱୈପାୟନ ବ୍ୟାସଦେବଙ୍କ ଅଜାଙ୍କ ଗଡ଼ ଥିଲା । ନାଗରା ଜମିଦାର ସ୍ୱର୍ଗତ ଶିବ ନାରାୟଣ ସିଙ୍ଗ ମହାପାତ୍ର ସାଥିରେ ବନ୍ଧୁକ ଧରି ଆମ୍ଭମାନଙ୍କୁ ସାଙ୍ଗରେ ଘେନି ନାଗରାଗଡ଼ ଏବଂ ଦାସରାଜାଗଡ଼ ଦେଖିବାକୁ ବରାବର ଆସୁଥିଲେ ।

ଆଜି ଏହି ଦାସରାଜା ଗଡ଼ ବାହାରିଆ ଲୋକଙ୍କ ଘର ବାଡ଼ିରେ ପରିଣତ ହେବା ଜାଣି ଅତିଶୟ ଦୁଃଖିତ ହେଲି । ମା ମଙ୍ଗଳା, ରାଧାକୃଷ୍ଣ ଏବଂ ବ୍ୟାସମୁନି ଦାସରାଜାଗଡ଼କୁ ରକ୍ଷା କରନ୍ତୁ ।

। ଇତି ।

ତା ୧୦.୧.୧୯୯୪ ଶ୍ରୀ ଦିବାକର ଅଓ୍ୱସ୍ତି - ଶ୍ରୀ ଦିବାକର ଅଓ୍ୱସ୍ତି
ଗ୍ରାମ - ଟିମଯୋର ବୟସ ୮୬ ବର୍ଷ

(୮)

ଆମେ ଶ୍ରୀ ଗନ୍ଦଲ ପଣ୍ଡାଏତ, ପିତା ୰ ସାଧୁ ଚରଣ ପଣ୍ଡାଏତ, ଅଜା ସୁଖଲାଲ ପଣ୍ଡାଏତ ପୁରାତନ ବାଗବୁଡ଼ି ମୌଜା ଛେଣ୍ଡର ପ୍ରଜା ଥିଲୁଁ । ପ୍ରଜାସତ୍ୱ ହିସାବରେ ମୋର ଘରବାଡି ଖାତା ନମ୍ବର ଚାରି (୪) ଏବଂ ଅଣଶଠି (୫୯)ରେ ଥିଲା ।

ନାଗରା ଜମିଦାର ଦ୍ୱର୍ଗତ ଶିବରାନାୟଣ ସିଙ୍ଗ ମହାପାତ୍ରଙ୍କର ମୁଁ ଏବଂ ମୋର ବାପା ଅଜା ସେବାକାରୀ ଥିଲୁ । ୰ ଶିବନାରାୟଣ ସିଙ୍ଗ ମହାପାତ୍ରଙ୍କ ସହିତ ମୋ ବାପା ବରାବର ଦାସରାଜା ଗଡ଼କୁ ଆସୁଥିଲେ । ମୁଁ ପିଲାଦିନୁଁ ଅଦ୍ୟାବଧି ଦାସରାଜା ଗଡ଼ ଦେଖି ଆସୁଅଛି । ଏହି ଗଡ଼ କୋଇଲି, ଶଙ୍ଖ, ମୁହାଣର ପୂର୍ବ ଖଣ୍ଡିରେ ଅବସ୍ଥିତ । ଗଡ଼ ଭିତରେ ଶିମିଳି, ବାଉଁଶବୁଦା, ଅଶ୍ୱସ୍ଥ ଓ ଆକୁଲ ଗଛ ଥିଲା । ଭଙ୍ଗାଇଟା ପଡ଼ିଥିଲା । ବର୍ତ୍ତମାନ ଏହି ଦାସରାଜା ଗଡ଼ରେ ବାହାରିଆ ଲୋକ କୋଠାବାଡ଼ି କରି ରହିଛନ୍ତି । ଗଡ଼ର ଅଳ୍ପ ଜାଗା ଖାଲି ପଡ଼ିଛି ।

ଦାସରାଜା ଗଡ଼ର ବର୍ତ୍ତମାନ ଅବସ୍ଥିତି ଦେଖି ମୁଁ ଅତିଶୟ ଦୁଃଖିତ । ବ୍ୟାସମୁନି ଦାସରାଜାଗଡ଼କୁ ରକ୍ଷା କରନ୍ତୁ । ଶ୍ରୀ ଗନ୍ଦଲ ପଣ୍ଡାଏତ

। ଇତି ।

ତା ୧.୨.୧୯୯୪ ସ୍ୱା- ଶ୍ରୀ ଗନ୍ଦଲ ପଣ୍ଡାଏତ
ଗ୍ରାମ - ବାଗବୁଡ଼ି (ଛେଣ୍ଡ) ସୁନ୍ଦରଗଡ ବୟସ ୫୫ ବର୍ଷ

ଓଁ

ଆମ୍ଭର ବଂଶଧରଙ୍କୁ ଯଥାକ୍ରମେ ୰ ରଘୁନାଥ ଶେଖର ଦେଓ ରାଜା ସାହେବ, ଗାଙ୍ଗପୁର, ସୁନ୍ଦରଗଡ଼ ଓ ୰ ବାଲଙ୍କି ମହାପାତ୍ର ଜମିଦାର କୁମାରମୁଣ୍ଡା, ଯବାଘାଟ, ଦୁର୍ଗାପୁର, ଚାନ୍ଦିପୋସ, ଗ୍ରାମ ଦାନ ବ୍ରହ୍ମତ୍ତର ସୂତ୍ରରେ ଦେଇଥିଲେ - ସୁନ୍ଦରଗଡ଼ ଓ କୁମାରମୁଣ୍ଡାରେ ଚଣ୍ଡିପାଠ ଓ ନାଗ୍ରାରେ ପୂରୋହିତ କାର୍ଯ୍ୟ କରିବା ପାଇଁ ତଦ୍‌ଅନୁଯାୟୀ ଆମ୍ଭର ବଂଶଧର ତଥା ସ୍ୱର୍ଗତ ପିତା ରାଧାବଲ୍ଲଭ ପଣ୍ଡା ଓ ପିତାମହ ମାନଧାତା ପଣ୍ଡା ବରାବର ନାଗ୍ରା, କିଞ୍ଜିର, ସିଂହଭୂମିର କେତେକ ଗ୍ରାମ ଭୂୟାଁ ଖଣ୍ଡାଏତ ସମାଜ, ବ୍ରାହ୍ମଣ ସମାଜ, ରାଉତିଆ ଓ ଅନ୍ୟମାନଙ୍କ ଘରେ ଅବଧି ପୁରୋହିତ କାର୍ଯ୍ୟ କରିଆସୁଛୁ ।

ପ୍ରଥମେ ସମସ୍ତ ପରିବାର ଦୁର୍ଗାପୁର ଗ୍ରାମରେ ରହିଥିଲୁ । ବର୍ତ୍ତମାନ ବାସନ୍ତି କଲୋନୀ, ଉଦିତ ଗନର ହୋଇଛି । ଅଧିକ କୁଟୁମ୍ବ ହେବାରୁ ଆମ୍ଭର ପିତା ୰ ରାଧା ବଲ୍ଲଭ ପଣ୍ଡା ଯବାଘାଟରେ ବାସକଲେ ୧୯୨୮ ମସିହାରୁ ।

ମୁଁ ପିଲାଦିନେ ବାପାଙ୍କ ସହ, ରାଣ୍ଟୋ, ବିରିକେରା, ଦଲକି, ମୂଷାପାଲି, ଗୋଏଲୋ, ଲାଠିକଟା, ଟାଇଁସର, ଟିମ୍‌ଯୋର, ବଲାଣି, ଦେଓଗାଁ, କୁମାରମୁଣ୍ଡା, କାଲୋ ସିହିରିଆ, ପଦ୍ମପୁର, ଜଗଦିଶପୁର, ଗୋପପାଲି, ଲୁଙ୍ଗେଇ, ଛେଣ୍ଡ, ବେଦବ୍ୟାସ ଗ୍ରାମକୁ ଯାଉଥିଲି । ଅନେକ ସମୟରେ ଯମସରା ଗଡ଼, ଦାସରାଗାଗଡ଼, ବେଦବ୍ୟାସ ସଂପର୍କରେ ପ୍ରଶ୍ନ କରୁଥିଲି ଓ ବାପା ମୋତେ ବୁଝାଉଥିଲେ।

୧୯୪୫ ମସିହା ଶିବରାତ୍ରି ଦିନ ବାପାଙ୍କ ସହ ବେଦବ୍ୟାସ ଯାଇଥିଲି । ବେଦବ୍ୟାସରେ ବେଦବ୍ୟାସ ଗୁମ୍ଫା, ସହସ୍ରଯୋନୀ ପଥର, ବ୍ରାହ୍ମଣୀ ନଦୀ, ଗୌତମ ଘୋଟକୁଳା, ଦାସରାଜାଗଡ଼ ସଂପର୍କରେ ବାପାଙ୍କ ସହ ଯେଜମାନଙ୍କ ଆଲୋଚନା ହେଉଥିଲା । ମୁଁ ସବୁ ଶୁଣୁଥାଏ । ଶିବରାତ୍ରି ପରଦିନ ନିତ୍ୟକର୍ମ ସରିଲାପରେ ଉପରୋକ୍ତ ଜାଗାସବୁ ଦେଖାଇବା ପାଇଁ ଜିଦ୍ ଧରି ବସିଲି । ବାପା ଯେଜମାନଙ୍କ ସହ କାର୍ଯ୍ୟବ୍ୟସ୍ତ ଥିଲେ ତେଣୁ ମୋ ଉପରେ ରାଗିଯାଇ ଗାଲକୁ ଗୋଟାଏ ଚଟକଣା ମାଇଲେ । ଏହା ଦେଖି ସ୍ୱର୍ଗୀୟ ଶିବ ନାରାୟଣ ସିଂ ମହାପାତ୍ର ଜମିଦାର କୁମାରମୁଣ୍ଡା, ୰ସୁଦର୍ଶନ କାଲୋ ପଦ୍ମପୁର, ୰ ଶ୍ରୀରାମ ନାଏକ ଗୋପପାଲି, ୰ ଦାମୋଦର ବେହେରା ଲୁଙ୍ଗେଇ ମୋ ପ୍ରତି ଅନୁକମ୍ପା ପ୍ରଦର୍ଶନ କରି ବାହାରିଲେ । ବ୍ୟାସଗୁମ୍ଫା, ରାମ ମନ୍ଦିର, ସହସ୍ରଯୋନୀ ପଥର ଦର୍ଶନ ପରେ ଛେଣ୍ଡ ଆସିଲୁ । ପ୍ରଥମେ ଗୌତମ ଘୋଟକୁଳା ପରିକ୍ରମା କରି, ଛେଣ୍ଡ କୋଇଲି ନଦୀ କୂଳରେ ଅବସ୍ଥିତ ଦାସରାଜାଗଡ଼କୁ ଗଲୁଁ । ସେଠାରେ ଦେଖିଲି ବାଉଁଶ ବୁଦା, ତେନ୍ତୁଳୀଗଛ ଓ ଲଟା ବୁଦାରେ ପରିପୂର୍ଣ୍ଣ ଥିଲା । ଯାତ୍ରୀମାନେ ଉକ୍ତ ବାଉଁଶ ଓ ତେନ୍ତୁଳି ଗଛରେ ସିନ୍ଦୁର, ଚୂଡ଼ି ଓ ପଇସା ଦେଇ ନମସ୍କାର କରନ୍ତି । ମୁଁ ମଧ୍ୟ ଦୁଇଟି କଣା ପଇସା ଦେଇ ନମସ୍କାର କଲି ଓ ବାପାଙ୍କୁ ପଚାରିଲି । ବାପା କହିଲେ '' ଏ ସିନ୍ଦୁର ଚୂଡ଼ି ଓ ଦାସରାଜାଙ୍କ ଝିଅ ଓ ବ୍ୟାସଦେବଙ୍କ ଜନନୀ ଯୋଜନଗନ୍ଧାଙ୍କ ଉଦ୍ଦେଶ୍ୟରେ ସମର୍ପଣ କରାଯାଏ ।''

ବର୍ତ୍ତମାନ ଦେଖିବାକୁ ପାଇଲି ଗଛ ବୃକ୍ଷ ଶେଷ । ଚୂଡ଼ି ସିନ୍ଦୁର ନାହିଁ । କେବଳ ଦେଖିବାକୁ ମିଳିବ ଜଣେ କଳାବଜାରୀ ମାରୁଆଡ଼ିର ଲକ୍ଷାଧିକ ଟଙ୍କାର ସୌଧ ଛିଡ଼ା ହୋଇଛି । ଶାସନର ନିଷ୍କ୍ରିୟତା,

ଅଫିସରମାନଙ୍କ ଅବହେଳା ଯୋଗୁଁ ଦାସରାଜା ଗଡ଼ ଓ ଯମସରା କେଶରୀ ରାଜାଙ୍କ ଗଡ଼ ଜବର ଦଖଲ ହୋଇଛି ।

ମୁଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରେ ଯେ ଭଗବାନ ଓଡ଼ିଶାର ଶାସକ ମାନଙ୍କୁ ସଦ୍‌ବୁଦ୍ଧି ଦିଅନ୍ତୁ ଓ ଏହି ଐତିହାସିକ ସ୍ଥାନମାନଙ୍କର ପୁନରୁଦ୍ଧାର ହେଉ ।

ଶ୍ରୀ ଶିବନାରାୟଣ ପଣ୍ଡା

ତା ୨୧.୩.୧୯୯୪
ଗ୍ରାମ - ଯବାଘାଟ, ସୁନ୍ଦରଗଡ

ସ୍ୱା - ଶ୍ରୀ ଶିବନାରାୟଣ ପଣ୍ଡା, ପୁରୋହିତ
ପୁରୋହିତ ଭବନ, ଯବାଘାଟ
ବୟସ ୬୦ ବର୍ଷ

(୧୦)

ସୁନ୍ଦରଗଡ଼ର ବେଦବ୍ୟାସ ଧାମର ପୂର୍ବଦିଗ ବ୍ରାହ୍ମଣୀନଦୀ ଖଣ୍ଡିରେ ଛେଁଣ୍ଠ ଗ୍ରାମ ଅଛି । ଏହି ଛେଁଣ୍ଠ ଗ୍ରାମର ଉତ୍ତର ଦିଗ ମୁଣ୍ଡରେ ଦାସରାଜା ଗଡ଼ ଅଛି । ଏହି ଗଡ଼ରେ ପୂର୍ବେ ଗଛଲତା ଭରିଥିଲା । ତେନ୍ତୁଳୀ ଗଛ, ବାଉଁଶ ବୁଦା ମୂଳରେ ଦର୍ଶକମାନେ ମୁଣ୍ଡିଆ ମାରୁଥିଲେ । ନାଗରା ଜମିଦାର ସ୍ୱର୍ଗତ ହରିହର ସିଂ ମହାପାତ୍ର ଓ ଶିବନାରାୟଣ ସିଂ ମହାପାତ୍ରଙ୍କ ସହିତ ମୁଁ ଏବଂ ମୋର ବାପା କଯୋଦର କାଲୋ, ଅଜା ବୃଷଭ କାଲୋ ଭାଇ ଶୁଦର୍ଶନ କାଲୋ ଦାସରାଜା ଗଡ଼ ଦେଖିବାକୁ ଯାଉଥିଲୁଁ ।

ବର୍ତ୍ତମାନ ଦାସରାଜା ଗଡ଼ରେ ବାହାରିଆ ଲୋକେ ଘରକରି ରହିଛନ୍ତି । ଏହି ଗଡ଼ ବ୍ୟାସମୁନିଙ୍କ ଅଜା ଗଡ଼ ଥିଲା ।

ମା' ଝଗଡ଼େଶ୍ୱରୀ ଏବଂ ବ୍ୟାସମୁନି ଦାସରାଜା ଗଡ଼କୁ ଉଧାର କରନ୍ତୁ ।

ଶ୍ରୀ ରଙ୍ଗଲାଲ କାଲୋ । ଇତି ।

ତା ୮.୪.୧୯୯୪
ଗ୍ରାମ - ପଦ୍ମପୁର, ସୁନ୍ଦରଗଡ

ସ୍ୱା - ଶ୍ରୀ ରଙ୍ଗଲାଲ କାଲୋ
ମା' ଝଗଡ଼େଶ୍ୱରୀଙ୍କ ସେବକ
ଗ୍ରାମ - ପଦ୍ମପୁର, ସୁନ୍ଦରଗଡ
ବୟସ ୭୦ ବର୍ଷ

# DASA RAJA'S PALACE NEAR VEDVYAS DHAAM

The ancient palace of 'Dasa Raja' is situated on the eastern bank of river Koel 'otherwise named as Jamuna' near the abode of Sage Vedvyas in the heart of Sundergarh district in the state of Orissa in a tranquil atmosphere. The king of this palace happened to be the maternal-grand father of the great Sage Vedvyas. Till time people speak of it Innumerable stories and folklores clamour this truth.

About 35 to 40 year ago big trees like Simili 'silk cotton plant', Tentuli 'Tamarind' and Ankula surrounded the dilapidated place of 'Dasaraja'. An ancient bamboo grove in the eastern side of the palace carried with it the past glory till be fag end of 1991. Of late the grove has been completely destroyed by some miscreants. Before the destruction of the grove another big old peepal tree annexed to the Palace also has been cut down. Besides these the dilapidated palace was covered with small thorny bushes like 'Vaincha' and 'Kantai'. Ancient broken pieces of bricks were lying scattered near palace area. The presiding deity of Dasaraja 'Gadashiri' roamed inside the Palace. The rattling of anklets of the goddes was being heard by the elders of that area. The story of the goddes presence in the dilapidated palace was being heard from the elders of that time.

The caretakers of this palace were Late Govind Sa, Laxman Sa and Sibacharan Sa, all being the inhabitants of chhend village. With the efflux of time, after the demise of Siba Charan Sa, Janmejaya Sa and Jagat Sa both of them being brothers and inhabitants of chhend village became the owners of the palace. Sri Janmejaya Sa and Jagat Sa are very innocent, simple and indifferent persons. Some outsiders have taken advantage of their simplicity and indifference and have started converting the palace area into the new Chhend village.

There was a canal in the northern side of the said palace. The The fishermen have been living on the bank of river Koel towards the north of this canal with temporary huts since a long time. The asharm of Sage Gautam on the hill of Ghatkura which was situated in the eastern side of the palace has lost it's identity in the newly born village.

To the East of the Dasaraja's palace is the Kissan Tola (village of peasants) is situated in the Chhend village.

The peasants of this village are the older inhabitants of this area. A dense forest was neighbouring the village. The Kissans (peasants) speak of having seen tigers, bears and other savage animals in this dense forest. The kissans of this village pay oblation to their ancestors in every

three years by giving a holly dip in the river Brahmani near Vedvyas (the abode of Sage Vedvyas) in the full-moon day in the month of Magha (February).

The Bhuyan Para (village of Bhuyans) is situated to the south of the palace. The Brahmin Para village of Brahmins) is adjacent to the Bhuyan Para. Both the Bhuyans and Brahmins are known to be the oldest inhabitants of this area.

The confluence of the river Koel and river Sankh (otherwise name 'Ganga') flows down in the west of the Dasaraja Palace. The confluence of the river Koel and river Sankh when meets 'Saraswati' near Vedvyas becomes Brahmani. The Indra Yogi Stone is seen in the 'Kathi Tangar' in the river of Sankh which flows towards the east of the palace. The 'Yamuna Heap' is seen in the northern side of the confluence of the three rivers. The abode of Sage Vedvyas is situated in the south-eastern side of the palace, i.e. on the western bank of the river Brahmani.

The present and past of the palace of Dasaraja as seen by the local inhabitants have been given in the annexure chronologically with their statements and signatures.

| Sl. No. | Name Village and Age of these persons who have seen Dasaraja's Palace. S/Shri | | | Opinion and Signature of the people who have seen the palace. |
|---|---|---|---|---|
| 1. | Sadhu Charan Behera | Hamirpur | 56 Yrs. | The story of the Dasaraja's Palace is true. It was the ancestral palace of the Bhuyans. Sd/- Sadhu Charan Behera Dt. 20.2.92 |
| 2. | Indramani Pradhan | Hamirpur | 60 Yrs. | The above said facts about the Dasaraja's Place is true. Sd/- Indramani Pradhan, Dt. |
| 3. | Baneswar Padhee | Chhend | 100 Yrs | Sd/- Baneswar Badhee, dt. 21.2.1992 |
| 4. | Kasinath Padhee | Chhend | 65 Yrs | The Dasaraja's Palace's existence is true. I have seen it in my childhood. But it is a matter of regreat that outsiders have purchased the land from our Gountia (Caretakers of the palace) trickfully. Sd/- Kasinath Padhee, dt. 21.2.92 |
| 5. | Goutam Padhee | Cheend | 80 Yrs. | Goutam Padhee, dt. 21.2.92 |
| 6. | Bamadev Mishra | Vedvyas | 62 Yrs. | I have seen the palace of Dasaraja in my childhood. Sd/- Bamadev Mishra (Priest) |
| 7. | Uday Pradhan | Bankia | 52 Yrs. | I shocked to learn that the palace of Dasaraja (the grand father of Sage |

| | | | | |
|---|---|---|---|---|
| | | | | Vedvyas) has been sold. This was our ancestral land.<br>Sd/-Uday Pradhan |
| 8. | Hrushikesh Panda | R.S.Colony Jhirpani | 78 Yrs. | While I use to go to Vedvyas to witness the fair at Vedvyas with my father (Late Nishakar Panda showed me the palace. I have seen it.<br>Sd/- Hrushiikesh Panda, dt.22.2.92 |
| 9. | Anant Charan Das | Tumkela | 60 Yrs. | Sd/- Anant Charan Das, dt.22.2.92. |
| 10. | Raghunath Sing | Brahmani Taranga, Naditola | 65 Yrs | I have seen the Dasaraja's palace at Vedvyas. Sd/- Raghunath Singh |
| 11. | Gopi Toppto | Chhend Kisanapada | 95 Yrs | I have been seeing the palace of Dasaraja. I see it.<br>LTI of Gopi Toppto<br>Witness : Bhika Majhi, dt.2.3.92. |
| 12. | Gosain Kissan | -do- | 55 Yrs | I have been seeing the Dasaraja's palace since my childhood.<br>LTI of Gosain Kissan<br>Witness : Subal Ch. Mallick, dt.2.3.92 |
| 13. | Khun Sing | Brahmani Tarang | 55 Yrs | I have seen the palace of the Dasaraja. My father late Kasinath Singh told me about the palace.<br>Sd/- Khun Singh |
| 14. | Sudarsan Kar | Riun | 90 Yrs. | The fact about the Dasaraja's Palace is correct. There was an ancient bamboo grove. The goddess (Gadashiri's) temple was not far away from the grove. Ancient brick pieces were lying scattered in the palace area. I have seen this when I was ten years old only. Dasaraja was the maternal grand father of Sage Vedvyas.<br>Sd/- Sudarsan Kar, dt. 13.7.92 |
| 15. | Arjun Raj | Bolani | 80 Yrs. | The renowned poet of Orissa, Gangadhar Meher has described the eternal beauty of the nature surrounding the abode of Sage Vedvyas (Vedvyas Dhaam) in his poems. I have seen the cave of Sage Vedvyas, Saraswati well Ahalya Stone, Indra Shashrakhya stone, the Dasaraja's palace, the cave of sage Parashar in my own eyes since my childhood.<br>I have also described the story pertaining to the birth of Sage Vedvyas in my different poems like 'Nagara Mahatma', Poem Collections, etc. It is a matter of regret that the famours Dasaraja Palace is taking a different shape. Sd/- Arjun Raj, dt.14.7.92. |

